ବାରକୁ । ପାଷାଣର କଠିନ ଦେହରେ, କୋଣାର୍କର ସ୍ଥୁରୁ କଳାମୟ ପ୍ରସ୍ତର ଗାତ୍ରରେ, କଙ୍କାଳର ଗମ୍ଭୀର ମୂର୍ତ୍ତି ଯେଉଁଦିନ ରୂପ ପାଇଲା, ସେଦିନ କିଏ କଳ୍ପନା କରିଥିଲା ଏଇ ଭୋକା, ଦରିଦ୍ର ପରିବାରକୁ ? ନା ହୁଏତ ସେଦିନ । ଜନତାର ଶିଳ୍ପୀ ଆଖି ସ୍ଥୁରୁକଳାରୁ ଆଗାମୀ ଶତ ଶତ ବର୍ଷ ପରେ ଏଇ ବୁଭୁକ୍ଷୁ ପରିବାର ଉପରେ ପଡ଼ି ପାରିନାହିଁ !

ଗଉରୀ ହରିକୁ ଧରି ଖେଳାଉଥିଲା । କାହ୍ନୁ କହିଲା, ଯାଉଚି, କାଲି ଆସିବି । ଏଇ ରଖ ଦଶ ଟଙ୍କା ଖର୍ଚ୍ଚ କରିବୁ ।

ପକେଟରୁ ନୋଟ ଖଣ୍ଡ ବାହାର କରି ଗଉରୀ ହାତରେ ଦେଲା । ଗଉରୀ କହିଲା, ନା, ନା, ଦରକାର ନାହିଁ, ବେଶି ଚଳି ଯାଉଚି ।

କାହ୍ନୁ ଗମ୍ଭୀର ହୋଇ ଡାକିଲା, ଗଉରି !

କାହ୍ନୁ ଚାଲିଆସିଲା । ରାସ୍ତା ଉପରେ ଚନ୍ଦ୍ର ଯାଉଚି । ଚନ୍ଦ୍ର କହିଲା, ହଲୋ, ବାଃ ଗୌରୀ ପାଖକୁ ଯାଇଥିଲୁ ନା ? ବେଶ୍ ଦେଖିବାକୁ ସେ, ସୁନ୍ଦରୀ ରୂପସୀ ଯୁବତୀ । ରାଧାକୃଷ୍ଣ ଅଭିନୟଟା ବେଶ୍ ଜମିବ ଏକା ! ନା, ଜମିଗଲାଣି ?

କାହ୍ନୁ କହିଲା, ଚନ୍ଦ୍ର !

ଚନ୍ଦ୍ର ହସି ହସି ସାଇକେଲ ଉପରେ ଉଠିଲା । ମନେ କରୁଥିବୁରେ ଏ ଅଭାଗା ବନ୍ଧୁକୁ । ପ୍ରେମସ୍ରୋତରେ ଭାସିଯାଇ ଗରିବ ବନ୍ଧୁକୁ ଭୁଲିଯିବୁ ନାହିଁ । ଚନ୍ଦ୍ର ଚାଲି ଯାଉଚି । ଏଥର ଆଉ ପୋଲିସ ଭୟ ନାହିଁ, ଖାଲି ରାସ୍ତା, ବନା ଆଲୁଅରେ ଯାଇ ହେବ !

ଅନ୍ଧାରରେ ଉପର ମହଲାକୁ କାହ୍ନୁ ଉଠିଲା । ସ୍ୱିଚ ଟାଣି ଦେଲା । ଲୁବ ଖୋଲିଗଲା । ଉଠିଆସିଲା ମାରିଲା । ମହମବତୀ ବଜାରରୁ ଆଣିବାକୁ ମନେ ପଡ଼ିଲା ନାହିଁ । ବର୍ତ୍ତମାନ ନ'ଟା ବାଜିବ ବୋଧ-

ହୁଏ । ଦୋକାନ ପଡ଼ିଯିବଣି । ଝରକା ଖୋଲି ଦେଲି । ପାଖ ଘରୁ ମାଂସର ତୃପ୍ତିକର ବାସନା ଭାସି ଆସୁଛି । ରେଡ଼ିଓରୁ ଭାସି ଆସୁଛି ତରୁଣୀ କଣ୍ଠର ଗାନ, ଛନ ଛନ ଯଉବନ ମୋର, ବନ୍ଧୁହେ ଝୁରି ମରେ...

ତଳେ ସପଟାଏ ପକାଇ କାନ୍ଦୁ ଶୋଇ ପଡ଼ିଲି ।

ବାହାରେ ଲେଖା ହୋଇଚ ସାଇନ୍ ବୋର୍ଡ଼, ଏମ୍. କାନୁନଗୋ ଏମ୍. ଏସ୍. ସି., ପି. ଏଚ୍. ଡ଼ି. । ଗେଟ୍ ମେଲି କରି ଭିତରକୁ ଯିବାକୁ ବସିଚି, ଗୋଟିଏ କଳା କୁକୁର ଛୁଟି ଆସିଲା ବାରଣ୍ଡାରୁ । କାହ୍ନୁ ପ୍ରାଣ ଭୟରେ ଗେଟ୍ ବାହାରକୁ ଦଉଡ଼ ଆସିଲା । ଆସିଲା ବେଳକୁ ପଥରରେ ଝୁଣ୍ଟି ବୁଢ଼ା ଆଙ୍ଗୁଠି ଛିଡ଼ିଗଲା ।

ଚପରାଶି ଆସି କହିଲା, କାହାକୁ ଖୋଜୁଛନ୍ତି ।

କାହ୍ନୁ କହିଲା, କାନୁନଗୋ ଘରେ ଅଛନ୍ତି ?

ସା'ବ ବାହାରକୁ ଯାଇଛନ୍ତି ।

ଫେରିବେ କେତେବେଳେ ?

ଦଶଟା ପନ୍ଦରରେ ।

ମା ?

ମା ଶୋଇଛନ୍ତି ।

ଉଠିବେ କେତେବେଳକୁ ?

ଠିକ୍ ନାହିଁ ।

ବର୍ତ୍ତମାନ ଦେଖା ମିଳିବ ?

ନା, ଅପେକ୍ଷା କରନ୍ତୁ ।

ଚପରାଶି ନେଇ ବସାଇ ଦେଲା ବାହାର ଘରେ । କିଏ ଦେଖା କରିବାକୁ ଆସିଲେ ଏଇ ଘରେ ଅପେକ୍ଷା କରିବାକୁ ହୁଏ । ଗୋଟାଏ ସେଣ୍ଟ୍ରେଲ୍ ଟେବୁଲ । ତା ଚାରି ପାଖରେ କେତୋଟା ସୋଫା । କାନ୍ଥରେ ବିଦେଶୀ ତରୁଣୀଙ୍କର ଛବି । ପ୍ରତି ଅଙ୍ଗେ ଅଙ୍ଗେ ଫୁଟି ଉଠିଚି ଯୌବନର ଉଚ୍ଛୃଙ୍ଖଳତା । ଗୋଟାଏ ପଟେ କେତେ ଜଣ ୟୁଇନଜ୍ ତରୁଣୀଙ୍କର ଉଲଗ୍ନ ଛବି । ମୁହଁରେ କୁତ୍ସିତ ହସ । କାହ୍ନୁ

ମୁହଁ ଫେରାଇ ଆଣିଲା । ଝରକା ଉପରକୁ ଘରଭରର ଅର୍ଦ୍ଧଲଗ୍ନ ଫଟୋର, ଗାନ୍ଧିଙ୍କ ଛବି ଥିବା କ୍ୟାଲେଣ୍ଡର ଗୋଟାଏ । କ୍ୟାଲେଣ୍ଡର ଉପରେ ଲେଖା ହୋଇଛି, ଗାନ୍ଧି ମାର୍କା ଘି ପାନ କରନ୍ତୁ ! ଫଟୋ-ଟାରୁ ଅଧେ ଉଇ ଖାଇଗଲାଣି । କେବଳ ମୁହଁରୁ ଅନୁମାନ କରିହୁଏ ଗାନ୍ଧିଙ୍କ ଛବି ବୋଲି ।

ଘରର ଗୋଟାଏ କୋଣକୁ ବଲଆର୍ଡ଼ ଟେବୁଲ । ତା ଉପରେ ଗୋଟାଏ ବିଲାତି ମଦ କାରଖାନାର ସଚିତ୍ର କ୍ୟାଲେଣ୍ଡର । ରିପରାଣି ଗୋଟାଏ ସିଗାରେଟ୍ ପ୍ୟାକେଟ୍ ଆଉ ଗୋଟାଏ ଉଆସିଲ ଆଣି ଦେଲା । ଖଣ୍ଡେ ସିଗାରେଟରେ ନିଆଁ ଲଗାଇଲା କାହ୍ନୁ ।

ସୁମିତ୍ରା କହିଛି ସନ୍ଧ୍ୟା ବେଳକୁ ସିନେମା ଦେଖିଯିବା ପାଇଁ । ଗଉରୀ ପାଖକୁ ତିନି ଦିନ ହେଲା ଯାଇ ନାହିଁ । ଏ ତିନି ଦିନ ଭିତରେ ଗଉରୀ କଣ କରୁଥିବ ? ଭଉ କଣ କହୁଥିଲା ? ରାଧାକୃଷ୍ଣ ଅଭି-ନୟଟା ବେଶ ଜମିବ ଏକା ! ଶିକ୍ଷିତ ଭଉର ଆଖିକୁ ଖରାପ କଲା କିଏ ? ଯେଉଁ ଦେଶର ଆକାଶରେ ସନ୍ନ୍ୟାସର ଗମ୍ଭୀର ଉଦାର ପ୍ରକାଶ, ଯେଉଁ ଦେଶର ବାୟୁରେ ଶତ ଶତ କୋଟି କୋଟି ଦେବ ଦେବୀଙ୍କର ପବିତ୍ର ନିଶ୍ୱାସ, ଯେଉଁ ଦେଶର ମାଟିରେ ଲକ୍ଷ୍ମୀଙ୍କର ନିତ୍ୟ ଅଭିସାର, ସେ ଦେଶର ଆଖିରେ ଏ ଖରାପ ଦୃଷ୍ଟି, ଏ ବିକୃତ ଦୃଷ୍ଟି କେବେ ଆତ୍ମ ପ୍ରକାଶ କଲା ?

ଉପରେ ଫ୍ୟାନ୍‌ଟା ବୁଲି ଚାଲିଛି ଅବିଶ୍ରାନ୍ତ ଭାବରେ । ଘର ଭିତରୁ ଉତ୍ତାପ ବାହାରୁଛି ଯେପରି ! କେଉଁ ବନ୍ଦୀ ଆତ୍ମାର କରୁଣ ଦୀର୍ଘଶ୍ୱାସ !

ସୁମିତ୍ରା, ଦେହ ପ୍ରତି ବିନ୍ଦୁରେ ଯାହାର ଉଚ୍ଛୁଳା ଯୌବନ, ସାରା ଶରୀରରେ ଯାହାର ଅପରୂପ ଲାବଣ୍ୟର ଅଫୁରନ୍ତ ବିକାଶ, ସେହି ସୁନ୍ଦରୀ ତରୁଣୀ ସୁମିତ୍ରା ତାଙ୍କୁ ଭଲପାଏ । ଭଲପାଏ ? ଭଲ

ପାଏ ତାର ବିକଟ ଦାରିଦ୍ର୍ୟକୁ ନା ତରୁଣ ଯୌବନକୁ ? ସେହି ସୌନ୍ଦର୍ଯ୍ୟର ଅନ୍ତରାଳରେ ଭଲ ପାଇବାର ମଦ୍ଦମୟ ପ୍ରକାଶ, ସେ ସୌନ୍ଦର୍ଯ୍ୟ କେଉଁଦିନୁ ଲୋପ ପାଇଚି ବାସ୍ତବତାର ନିଷ୍ଠୁର ଆଘାତରେ ।

ସହରର ଆକାଶରେ ମେ ମାସର କ୍ଷୁଧିତ ପ୍ରପୀଡ଼ିତ ସୂର୍ଯ୍ୟର ଉଗ୍ର ପ୍ରକାଶ । ପ୍ରତି ବିନ୍ଦୁରେ ଅଗ୍ନି ସ୍ଫୁଲିଙ୍ଗ ବୃଷ୍ଟି ହେଉଚି ଯେପରି ! ସିଗାରେଟ ପ୍ୟାକେଟରୁ ଆଉ ଗୋଟାଏ ସିଗାରେଟ କାଢ଼ି ନିଆଁ ଲଗାଇଲି । ସୁମିତ୍ରାକୁ ଭଲପାଇବା କଣ ଅନ୍ୟାୟ ? ପାପ ? ବନ୍ଧୁ ସନ୍ତୋଷର ସ୍ତ୍ରୀ ସୁମିତ୍ରା କଣ ଅନ୍ୟର ପ୍ରେମିକା ହୋଇ ନ ପାରେ ? ସନ୍ତୋଷ ମଦ ଖାଏ, ସୁମିତ୍ରାକୁ ଭଲ ପାଏନାହିଁ । ସୁମିତ୍ରା ତାକୁ ଚାହେଁ ନାହିଁ । କାହାର ଅନ୍ୟାୟ ? ସୁମିତ୍ରାର ନା ସନ୍ତୋଷର ? ସୁମିତ୍ରାର କରୁଣ ଆହ୍ୱାନ ଏଇ ପ୍ରଚଣ୍ଡ ରୌଦ୍ରର ପ୍ରତି କିରଣରେ ଭାସି ଆସୁଚି ଯେପରି, ହେ ସୁନ୍ଦର, ହେ କମନୀୟ, ଆସ, ଆସ...

ରାଧା ବିଳାସ ବ୍ୟସନର ଆବେଷ୍ଟନ ଭିତରେ ହୁଏତ ମନେ ରଖି ନ ଥିବ । ସେ ଦିନର ଚପଳା ରାଧା ଆଜି କଣ ସେହିପରି ଥିବ ? ସେ କାହିଁକି ଆସିଲା ? ରାଧାର ସ୍ୱାମୀ ସରକାରୀ ହାକିମ । ଯଦି ଖଣ୍ଡେ ଚାକିରି ଅନ୍ତତଃ ମିଳିପାରେ । ସନ୍ତୋଷ ପାଖରୁ ସେ ଚାଲି ଆସିବ ।

ବାହାରେ ବୈଶାଖର ରୁଦ୍ରତପ୍ତ ସୂର୍ଯ୍ୟକିରଣ ଚକ୍ ଚକ୍ କରୁଚି । ରାସ୍ତା ଉପରେ ଛୁଟିଚି ଯାନ ବାହାନର କ୍ଷୀଣ ସ୍ରୋତ, କେଉଁ ଏକ କ୍ଷୀଣ ସ୍ରୋତା ନଦୀ ପରି । ଗୋଟାଏ ଫେରିବାଲା ଚିତ୍କାର କରି ଡାକୁଚି, ଆଇସ୍‌କ୍ରିମ...ଏଗାରଟା ବାଜିଲା । ବାବୁ ତ ଆସିଲେ ନାହିଁ ! ଅଫିସ ସମୟ ହୋଇଗଲାଣି । ପ୍ୟାନଟା ବୁଲି ଚାଲିଚି ଠିକ୍ ଆଗ ପରି । ଓଃ, କି ଗରମ ହେଉଚି !

ବାପା ଚିଠି ଦେଇଛନ୍ତି । ତୋ ପତ୍ର ପାଇ ଯେତିକି ଆନନ୍ଦ ଅନୁଭବ କଲି ତାଠୁଁ ବେଶୀ ଦୁଃଖ ଅନୁଭବ କଲି । ଖବରରେ ବୁଲିବା କଥା ଅବିଶ୍ୱାସ କରି ପାରିଲି ନାହିଁ । କାରଣ ମୁଁ ଜାଣେ ତୁ ସେଥିରେ ଆନନ୍ଦ ଅନୁଭବ କରୁ । ପ୍ରତିବର୍ଷ ପରୀକ୍ଷା ପରେ ତୁ ସେଠା ଛାଡ଼ି ନ ଆସି ଏତିପରି କଷ୍ଟ ସହି ସେଠି ଅଖିଆ ଅପିଆ ବରଂ ପଡ଼ି ରହୁ, ଏଠାକୁ ଆସୁନାହିଁ । ତୋତେ ସେଠା ସାଥି ଭଲଲାଗେ । ବାଛୁରିକୁ ବନ୍ଧନ ମୁକ୍ତ କରିବା ମାତ୍ରକେ ସେ ଅସମ୍ଭାଳ ହୋଇ ମା ପାଖକୁ ଦୌଡ଼େ । ପ୍ରତ୍ୟେକ ଅବସର ପାଇବା ମାତ୍ରକେ ନିଜର ବାପମାଙ୍କ ପାଖକୁ ଚାଲିଯାନ୍ତି । ମୁଁ କାହାକୁ କହିବ ? ମନ ଦୁଃଖ ମନରେ ମାରେ । ତୋ ଅସ୍ୱାବନ୍ଧା ବୋଉକୁ ବେଶୀ ବାଧେ, ତୋ ମା ନିଜର ଦୁଃଖଟାକୁ ଚାପି ନପାରି ମୋତେ ବାରମ୍ବାର କହି ପକାଏ । ତାକୁ ବେଶୀ ବାଧିବାର କାରଣ ବୁଝି ପାରୁଥିବୁ । ତୁ ଯେତେବେଳେ ପିଲା ଥିଲୁ ଏ କନଷ୍ଟା ହୁଏତ ବୁଝି ପାରୁ ନଥିବୁ । ବୟସ ବୃଦ୍ଧି ସଙ୍ଗେ ଏହା ଉପଲବ୍ଧି କରିବା କଥା । ଅନୁଭବୀ ତୁ; ସେ କଥା ଅନୁଭବ କରୁଥିବୁ । ତୋର ଗତ ପରୀକ୍ଷା କଥା, ପାଶ୍ କରି ନାହୁଁ ଜାଣି ଦୁଃଖିତ ହେଲି । ମୂଳଆ ହୁଡ଼େ ଯଦି, ଚଷା ବର୍ଷେ, ମୂଳିଆ ଦିଶିଯୁ ଦିନ ହୁଡେ ନାହିଁ, ଚଷା ଦିଶିଯୁ ବର୍ଷ ହୁଡ଼େ ନାହିଁ । ତୁ ପରୀକ୍ଷାରେ ବର୍ଷେ ହୁଡ଼ିଲୁ, ୨ୟ ବର୍ଷ ହୁଡ଼ିଲୁ; ୩ୟ ବର୍ଷ··କାହାକୁ କହିବ ? କେତେ ଆଶା, କେତେ ଆକାଂକ୍ଷା ସବୁ ଶୂନ୍ୟ ଆକାଶରେ ଶରଦ୍‌ଘନ ପରି ମିଳାଇ ଗଲା ! ଚାରିଆଡ଼େ ଅନ୍ଧାର ଦେଖା ଯାଉଛି···ହତଭାଗ୍ୟ ମୁଁ, ମୋର ଭାଗ୍ୟ ଖରାପ । କେଉଁ ଜନ୍ମରେ ଏତେ ପାପ କରିଥିଲି ଯେ ଏ ଜନ୍ମରେ ଏତେ ଦୁଃଖ ଭୋଗ କରୁଛି । କାନ୍ଦି କାନ୍ଦି ଆଖିରୁ ଲୁହ ସରିଯାଇଛି, ଆଉ ଲୁହ ନାହିଁ କାନ୍ଦିବାକୁ···ତୁ ପିଲା, ବାପମାଙ୍କ ଦୁଃଖ ବୁଝି

ପାରିବୁ ନାହିଁ । ସେତେବେଳେ ବାପ ହେବୁ, ସେତେବେଳେ ବୁଝିବୁ ଏ ଦୁଃଖ...

ସେଦିନ ସୁମିତ୍ରାକୁ ସମୁଦ୍ର କୂଳରେ ଏକାକିନୀ ଛାଡ଼ି ଚାଲି ଆସିଥିଲା; ସେ କ'ଣ ଭାବିଥିବ ? ଭାବିଥିବ କାହ୍ନୁ ଦୁର୍ବଳ, କାହ୍ନୁ ଭୀରୁ, କାପୁରୁଷ !

ଜୀବନ ସଂଗ୍ରାମରେ ପରାଜିତ କାହ୍ନୁକୁ ଯଦି କିଏ କହେ ଭୀରୁ ଦୁର୍ବଳ କାପୁରୁଷ ତେବେ ଭୁଲ ରହିଲା କେଉଁଠି ? କି ଶୋଚନୀୟ ସେ ପରାଜୟ ! କିନ୍ତୁ ମର୍ମନ୍ତୁଦ ଜୀବନର ସେ ଉଦ୍ଭଟ ବିଦ୍ରୂପ ! ଜୀବନକୁ ଯଦି ହତ୍ୟା କରାଯାଇ ପାରନ୍ତା ! ଜୀବନ ସଂଗ୍ରାମରେ ଜୟ ଲାଭ କରିବା ପାଇଁ କେତେ ସ୍ୱେଦ, କେତେ ଅଶ୍ରୁ, କେତେ ରକ୍ତଦାନ କରା ହେଲା, କିନ୍ତୁ କି ପ୍ରତିଦାନ ମିଳିଲା ? ମନ ହୃଦୟର କୋଣେ କୋଣେ ଶତ ଶତ କ୍ଷତ ଏବେ ବି ପ୍ରାଣକୁ ପୀଡ଼ନ କରେ ! କି ମର୍ମନ୍ତୁଦ ସେ ଯନ୍ତ୍ରଣା !

ନମସ୍କାର !

କାହ୍ନୁ ମୁଣ୍ଡ ଟେକି ଦେଖିଲା, ଆଗରେ ରାଧା । କହିଲା, ନମସ୍କାର !

କେତେବେଳୁ ଆସିଲଣି ?

ପ୍ରାୟ ନଅଟା ବେଳୁ ।

ଖାଇସାରି ଶୋଇ ପଡ଼ିଥିଲି, ବର୍ତ୍ତମାନ ବାରଟା ବାଜିଲାଣି ।

ରାଧା ଚାଲିଲା ଆଗରେ, ତା ପଛେ ପଛେ କାହ୍ନୁ । ଉପର ମହଲାର ଗୋଟିଏ ରୁମ୍‌ରେ ଦୁହେଁ ଯାଇ ବସିଲେ । ରୁମର ଚତୁର୍ଦ୍ଦିଗରେ କେତେଟା କୁସନ୍ ଚେୟାର ଓ ସୋଫା ବିକ୍ଷିପ୍ତ ଭାବରେ ପଡ଼ିଛି । ଗୋଟାଏ ଟିପ୍ପଏ ଟେବୁଲ ଉପରେ ଦାମିକା ରେଡ଼ିଓ । କେତେଟା ଆଲମିରାରେ ବଡ଼ ବଡ଼ ବହି ।

କାହ୍ନୁ କହିଲା, ବାଃ ବଡ଼ ଲଭଲେଟର ତ ।

କିନ୍ତୁ ଦୀର୍ଘ ପଚିଶ ବର୍ଷ ହେଲା ଆଲମିରାର ଗୁବ ଖୋଲି ନାହିଁ, ତାଙ୍କୁ ପଢ଼ିବାକୁ ଫୁରସତ ନାହିଁ ।

କାହ୍ନୁର ଗୋଟାଏ ପାଖରେ ମି: କାନୁନଗୋଙ୍କର ପ୍ରକାଣ୍ଡ ତୈଳ ଚିତ୍ର । ତଳକୁ ଲେଖା ହୋଇଚି ମି: ଏମ୍ କାନୁନଗୋ, ୧୨ ଫେବୃଆରୀ । ଖୁବ୍ ନିକଟରେ ତିଆରି ହୋଇଚି ନିଶ୍ଚୟ । ବେଶ୍ ଥଣ୍ଡା ଲାଗୁଚି ଘରଟା । ଏୟାର କନ୍‌ଡ଼ିସନଡ଼୍ ବୋଧହୁଏ ।

୧୨ ଫେବୃଆରୀ…ଟେବୁଲ ଉପରେ ନିଷ୍ପ୍ରଭ ଭାବରେ ଜଳି ଜଳୁଥିଲା କିରୋସିନ ଲ୍ୟାମ୍ପଟି । ରାଧା କହୁଥିଲା, ତମକୁ ଭଲପାଏ, ଭଲପାଏ ପ୍ରିୟ । ହେ ନିଷ୍ଠୁର, ହେ ନିର୍ମମ, ହେ ସୁନ୍ଦର, ହେ ମଙ୍ଗଳ, ଜାଗ ଜାଗ । ମୋର ଅନ୍ତରର ରୁଦ୍ଧ ବେଦନାକୁ କେତେ ଦିନ ରୁଦ୍ଧ କରି ରଖିଥିବ ? ମତେ ମୁକ୍ତ ଦିଅ, ମୁକ୍ତି ଦିଅ । ନା, ନା, ରାଧା କଣ ଏଥି କହୁଥିଲା ? ଗଉସ କହୁଥିଲା, ରାଧା ସୁରବାବୁଙ୍କୁ ଭଲପାଏ । ଦୁହେଁ ମନ୍ଦିରରେ ପ୍ରତିଜ୍ଞା କରିଛନ୍ତି ଯଦି ଦୁହେଁ ବିବାହିତ ହୋଇ ନ ପାରନ୍ତି ତେବେ ଅବିବାହିତ ରହିବେ ଚିରଦିନ । ରାଧା ବିବାହ କରିଚି, ସୁରବାବୁ ଦାଢ଼ୀ ଛାଡ଼ିଛନ୍ତି, ସନ୍ନ୍ୟାସ ଗ୍ରହଣ କରିବେ । କହିବେ, ଏ ସଂସାର ମିଥ୍ୟା, କେହି କୁହେଁ କାହାର । ଶୁଷ୍କ ଆଦର୍ଶବାଦରେ ଭୁଲି ଯିବାକୁ ଚେଷ୍ଟା କରିବେ ଯେବେ ଜଣେ ସୁନ୍ଦରୀ ବାଳିକାକୁ ସେ ଭଲ ପାଉଥିଲେ, ଏକ ଦୁର୍ବଳ ମୁହୂର୍ତ୍ତରେ ତାଙ୍କୁ ଏକ ବାଳିକା ଆକର୍ଷଣ କରିଥିଲା । କିନ୍ତୁ କିଏ କହିପାରେ ଆଗାମୀ ସେଇ ମୁହୂର୍ତ୍ତରେ ମନର ମନ୍ଦିରରେ ମାନସୀ ରାଧାର ରୂପ ନାଚି ନ ଉଠିବ ବୋଲି ? ସମାଜର ଶାସନ, ଶାସ୍ତ୍ରର ଉପଦେଶ, ନୈତିକତାର କଠୋର ବନ୍ଧନକୁ

'ଦୃଷ୍ଟି କର ନାଚ ଉଠିବ ହୁଏତ ଷୋଡ଼ଶୀ ରାଧାର ସକରୁଣ ଲଜ୍ୟାନତ ମୁଖ ।

ରାଧା କହିଲା, ବସ, ଠିଆ ହେଲ ଯେ ।

ଘର ଗରମ ଲାଗୁଚ !

ସତେ ନା କଣ ? ଘରଟା ଯେ ଏୟାର କନ୍‌ଡ଼ିସନଡ଼ ।

ଓଃ ! କାହ୍ନୁ ଗୋଟାଏ କୁସନ୍ ଚେୟାରରେ ବସିପଡ଼ିଲା ।

ରାଧା ଉଠିଗଲା ସିଗାରେଟ ଆଣିବାକୁ । ରାଧାର ଚକ୍‌କଣ କେଶଗୁଚ୍ଛ ବର୍ତ୍ତୁଳ ନିତମ୍ବ ଉପରେ ନାଚ ନାଚ ଖେଳ ବୁଲୁଚ । ଧୀର ପଦପାତରେ ପଦ୍ମ ଫୁଟି ଉଠୁଚ ଯେପରି । ଘରର ଅବ-ହାଓ୍ୟାରେ କେମିତି ଗୋଟାଏ ପ୍ରାଚୁର୍ଯ୍ୟର ଐଶ୍ବର୍ଯ୍ୟର ଉଚ୍ଛୃଙ୍ଖଳତା ଭରି ରହିଚ । ଝରକାର ରେଲିଂ ଦେଇ ଦେଖା ଯାଉଚ ସହରର ସୁଉଚ୍ଚ ପ୍ରାସାଦମାଳା । ଏ ପ୍ରାସାଦମାଳା ଯେପରି ଲୁଚାଇ ଦେଇଚ ତାର ପ୍ରାଚୁର୍ଯ୍ୟ ଓ ଐଶ୍ବର୍ଯ୍ୟ ମଧ୍ୟରେ ଜୀବନର ସମସ୍ତ ରିକ୍ତତା, ବଞ୍ଚିବାର ବିକଟ ସଂଗ୍ରାମ, ଆଉ ଦାରିଦ୍ର୍ୟର ସମସ୍ତ ଅଭିଶାପ । ପ୍ରାସାଦ ଉପରକୁ ବଢ଼ିବାରେ ଲାଗିଚି, ଏ ବଢ଼ିବାର ଯେପରି ଶେଷ ନାହିଁ ! କାହ୍ନୁରେ ମି: କାହ୍ନୁଚରଣଙ୍କ ମୁଖରେ ଫୁଟି ଉଠିଚ ଗୋଟାଏ ବିକୃତ ଉପହାସ । କାହ୍ନୁର ଦାରିଦ୍ର୍ୟ ପ୍ରତି, ତାର ଅଭିଶପ୍ତ ଜୀବନ ପ୍ରତି, ତାର ବିରାଟ ପରାଜୟ ପ୍ରତି ଯେପରି ଏ ଉପହାସ । ଆଉ ହୁଏତ ତାର ବ୍ୟର୍ଥ ପ୍ରେମ ପ୍ରତି ।

ରାଧା ସିଗାରେଟ ଟିଣଟା ଆଣି ଥୋଇଦେଲା ଟେବୁଲ ଉପରେ । କାହ୍ନୁ ଟିଣରୁ ଗୋଟାଏ ସିଗାରେଟ ବାହାର କଲା ।

ସିଗାରେଟ ଲାଇଟର ତ୍ରିପୁରରେ ଅଛି ।

ସିଗାରେଟରେ ନିଆଁ ଲଗାଇଲା । ସିଗାରେଟଟା ପୋଡ଼ି ପୋଡ଼ି ଧ୍ୱଂସ ହୋଇ ଯାଉଚ, ତା ସଙ୍ଗେ ସଙ୍ଗେ ତା ଜୀବନକୁ ମଧ୍ୟ

ଧ୍ୱଂସ କରିବାକୁ ବସିଛି ଯେପରି । କାହ୍ନୁ କାଶି ଉଠିଲା ଜୋରରେ ।

ରାଧା କହିଲା, ଏତେ ସିଗାରେଟ ଖାଅ ନାହିଁ, ବେଶୀ ସିଗାରେଟ ଖାଇଲେ ସ୍ୱାସ୍ଥ୍ୟ ଖରାପ ହୁଏ ।

କାହ୍ନୁ ହସି ଉଠିଲା । କି ବିକଟାଳ ସେ ହସ, କି କୁତ୍ସିତ ସେ ହସ ! କାହ୍ନୁ ଭିତରୁ କାହ୍ନୁର ପ୍ରେତାତ୍ମା ଯେପରି ଉପହାସ କରି ଉଠୁଛି ! କାହ୍ନୁର କଣ ସ୍ୱାସ୍ଥ୍ୟ ଅଛି ? କାହ୍ନୁର କଣ ଦେହ ଅଛି ? ଅଛି ବିକଟ ଦାରିଦ୍ର୍ୟ, ଅଭିଶପ୍ତ ଜୀବନ, କ୍ଷୁଧା, ଅନାଟନ, ମୃତ୍ୟୁଚିନ୍ତା !

ରାଧା କହିଲା, ବାହାଘରକୁ ତ ଗଲନାହିଁ ! ହଁ କାହିଁକି ଯାଇଥାନ୍ତ, ମୁଁ ତମର କିଏ କି ?

କାହ୍ନୁ ନୀରବରେ ସିଗାରେଟଟା ଟାଣିବାକୁ ଲାଗିଲା । ଏହାର କି ଉତ୍ତର ଦେବ ସେ ? ତାର ମାନସୀ ପ୍ରତିମାର ଜୀବନ୍ତ ସମାଧି ଉପରେ ସହ୍ୟ କରିଥାନ୍ତା ସେ ? ରାଧାର ଆଖିରେ କାହିଁ ସେଇ କରୁଣ ଭାବ ? ତାର କାହିଁ ସେ ଛଳ ଛଳ ଆଖି ? କାହିଁ ସେ ଛଳ ଛଳ ମୁହଁ ? କାହିଁ ତାର ନୃତ୍ୟ ଚପଳ ଦେହର ଲୀଳାୟିତ ଭଙ୍ଗୀ ?

ଏ ବର୍ଷ ପରୀକ୍ଷା ଦେଇଥିଲ ?

ଦେଇଥିଲି ।

କ'ଣ ହେଲା ?

ଏଥର ରାଧା ଖବର କାଗଜ ପଢ଼ିନାହିଁ, ପଢ଼ିବାକୁ ହୁଏତ ଅବସର ପାଇନାହିଁ । ହୁଏତ ଦରକାର ନାହିଁ । ଅଜ୍ଞାତରେ ଶୁଭା-କାଂକ୍ଷିଣୀ ରାଧା ଆଜି ଶୁଭାକାଂକ୍ଷିଣୀ ହୋଇ ନାହିଁ ।

ରାଧା ଆଜି ଅରେ ପଚାରିଲା, କଣ ହେଲା ?

କାହ୍ନୁ ସଂକ୍ଷେପରେ କହିଲା, ନା ।

କଣ ନା

ନା ।

ଫେଲ ହୋଇଗଲ ? କଣ କରାଯାଏ ! ଯାହା ଭାଗ୍ୟରେ ଥିଲା ।

ଘର ଭିତରକୁ ପଶି ଆସିଲା ଆଠ ବର୍ଷର ବାଳକଟିଏ । ରାଧା କହିଲା, ଏ ମୋର ପୁଅ ।

କାହ୍ନୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା, ତୋ ପୁଅ ? ମାନେ ?

ରାଧା ହାଃ-ହାଃ ହୋଇ ହସି ଉଠିଲା, ମାନେ ଆଉ କଣ ହୋଇ ପାରେ ? ପୁଅ । ମୁଁ ବାହା ହୋଇ ଆସିଲାବେଳକୁ ଆଠ ବର୍ଷ ହୋଇଥିଲା ଯାକୁ । ଯା ଉପର ଭଉଣୀକୁ ଅଠର ବର୍ଷ, ମୋର ବାହାଘର ହେବା ପୂର୍ବରୁ ଝିଅର ବାହାଘର ହୋଇ ସାରିଥିଲା । ବଡ଼ ସୁନ୍ଦର ଚିତ୍ର ଆଙ୍କିପାରେ ଏ । ମଣ୍ଟୁ, ଗଲୁ ଆଉ ଘରୁ ତୋ ଡ୍ରଇଁ ଖାତାଟା ଆଣିବୁ ।

ମଣ୍ଟୁ, ରାଧାର ପୁଅ ମଣ୍ଟୁ, ଚାଲିଗଲା ।

ତାର କୁଆଡ଼େ ଚିତ୍ର ଆଙ୍କିବାରେ ଦକ୍ଷତା ଅଛି, ବହୁତ ପ୍ରାଇଜ ପାଇଲାଣି, ଆଉ କେତେ ବର୍ଷ ପରେ ତାକୁ ଇଂଲଣ୍ଡ ପଠାଇବାକୁ ଇଚ୍ଛା କରୁଛନ୍ତି ।

ମଣ୍ଟୁ ଡ୍ରଇଁ ଖାତା ଧରି ପହଞ୍ଚିଲା । କାହ୍ନୁ ତା ହାତରୁ ଡ୍ରଇଁ ଖାତା ନେଇ ଚିତ୍ର ଦେଖିବାରେ ଲାଗିଲା, ବାଃ ବଡ଼ ସୁନ୍ଦର ତ ଛବି ଗୁଡ଼ାକ ! ପ୍ରଥମ ଛବିଟା ଗୋଟାଏ ମଣିଷର । ତଳେ ମଣିଷ ବୋଲି ଲେଖା ହୋଇ ନ ଥିଲେ ଜଣେ ହୁଏତ ଭାବନ୍ତା ତାକୁ କେତେଟା ତ୍ରିଭୁଜ ଓ ଚତୁର୍ଭୁଜର ସମନ୍ୱୟ ବୋଲି । ବର୍ଣ୍ଣ ଆର୍ଟିଷ୍ଟ ନିଶ୍ଚୟ ! ବଡ଼ ଲୋକମାନଙ୍କୁ ସେମାନଙ୍କର ଐଶ୍ବର୍ଯ୍ୟ ବିଶିଷ୍ଟ କରି,

ଶବ୍ଦଶିଳ୍ପୀ, ନାଟ୍ୟକାର, ସଙ୍ଗୀତଜ୍ଞ, ଐତିହାସିକ କମ୍ବା ନେତା ରୂପେ ସୃଷ୍ଟି କରେଚ ! ସମ୍ପଦ ଅ‌ାସିଲେ କଳା କ ଶୀଘ୍ର ଆସେ !

ମଣ୍ଟୁ କହିଲା, ବୋଉ ତୋ କାନ ଦେଖା···

ରାଧା କହିଲା, ଛି, ଭଦ୍ରଲୋକ ବସିଛନ୍ତି, ଭୁ ଯା···

କାହ୍ନୁ ପଚ୍ଛରିଲା, କଣ ?

ମୋ କାନରେ ପରଶ୍ରା କରିବ, ବାପାଙ୍କ ପକେଟ୍‌ରେ ଇ ।

ବାଃ, ଭାରି ଗୁଣବନ୍ତ ପୁତ୍ର ସନ୍ତାନ ତ !

ମଣ୍ଟୁ ଡ୍ରଇଁ ଖାତା ଧରି ନାଚି ନାଚି ଗ୍ଳଲଗଲା ।

ରାଧା କହିଲା, ଦେଖିଚ ମଣ୍ଟୁ ବାପାଙ୍କୁ ?

ଦେଖି ନାହିଁ ଯଦିଓ, ଫଟୋଟାରୁ ଅନୁମାନ କରୁଚି—

ହଁ, କେତେ ବର୍ଷ ତାଙ୍କୁ ଜାଣ ?

ଗ୍ଳଳିଶ ଖଣ୍ଟେ ହେବ !

ସତାବନ, ମୋଠାରୁ ପ୍ରାୟ ଗ୍ଳଳିଶ ବର୍ଷ ବଡ଼; ମୁଁ ତାଙ୍କର ପଞ୍ଚମ···ରାଧା ହସି ଉଠିଲା । ହସରେ ଘରଟା ଭାଙ୍ଗି ପଡ଼ିବ ଯେପରି ।

କାହ୍ନୁ ଡାକିଲା, ରାଧା !

ରାଧା ହସିବାରେ ଲାଗିଲା, ହାଃ—ହାଃ—ହାଃ···

ରାଧା !

କଣ ?

ଏ ବିବାହ ଅନ୍ୟାୟ !

ରାଧା ହସି ହସି କହିଲା, ସତେ ନା କଣ ? କିନ୍ତୁ ମୁଁ ତ ତାଙ୍କୁ ବାହା ହୋଇ ନାହିଁ, ହୋଇଚି ତାଙ୍କ ଅଜସ୍ର ସମ୍ପଦକୁ । ତେଣୁ ଦୁଃଖ ହେବ କାହିଁକି ? ମୁଁ ବେଶ୍ ଆନନ୍ଦରେ ଅଛି । ଚତୁର୍ଦ୍ଦିଗରେ ଐଶ୍ୱର୍ଯ୍ୟର ଚକ୍‌ମକରେ ମୁଁ ଭୁଲି ଯାଇଚି ମୋର ଦୁଃଖ,

ଅସ୍ତୁ ! କି ଶାନ୍ତିପ୍ରଦ ଏ ସମ୍ବାଦ ! ଭଗବାନ, ଚିରକାଳ ଏ ଧନର ଜୟ ହେଉ ! ଏ ଐଶ୍ବର୍ଯ୍ୟର ଜୟ ହେଉ !

ଘଣ୍ଟାରେ ଟଂ ଟଂ ହୋଇ ସ୍ତରିଟା ବାଜିଲା । କାହ୍ନୁ ଉଠି ପଡ଼ି କହିଲା, ଯାଉଚି ରାଧା; ସମୟ ହୋଇଗଲାଣି, ଆଜ କେତେବେଳେ ଆସିବ ।

ରାଧା ଅନ୍ୟମନସ୍କ ଭାବରେ ଉତ୍ତର ଦେଲା, ହଁ ।

ତୁ ରାଧା ଏସବୁ କଣ !

ରାଧା କାନ୍ଦି ଉଠିଲା । କାହ୍ନୁ ଆଖିରୁ ଲୁହ ପୋଛି ଦେଇ କହିଲା, ଏତୁକିଟିଏ ହେଲୁଣି ବୁଦ୍ଧି ହେଲା ନାହିଁ ।

ରାଧା ଶାନ୍ତ ହୋଇ କହିଲା, କେବେ କେବେ ବଡ଼ ଦୁର୍ବଳ ହୋଇ ପଡ଼େ, ଜାଣେନା କାହିଁକି ଏପରି ହୁଏ । କେତେ ଥର ମନକୁ ଶାସନ କରିଚି କେତେ ଥର ହୃଦୟର ଆବେଗକୁ ଦମନ କରିଚି, ତଥାପି ଏ ଦୁର୍ବଳତା ବାହାରି ପଡ଼େ ।

କାହ୍ନୁ ଘର ଭିତରୁ ବାହାରକୁ ଚାଲି ଆସିଲା । ଦ୍ୱାରବନ୍ଧ ପାଖରେ ରାଧା ହାତକୁ ସିଗାରେଟ ଟିଣଟା ବଢ଼ାଇ ଦେଇ କହିଲା, ନେଇ ଯାଅ ଏତକ ।

କାହ୍ନୁ ଆସିଲା ରାସ୍ତା ଉପରକୁ । ଏବେ ବି ସୂର୍ଯ୍ୟର ଉତ୍ତାପ କମ୍ ହୋଇ ନାହିଁ । ସ୍ତରିଟା ବାଜି ଗଲାଣି । ଆଜ ଅଫିସକୁ ଯାଇ ପାରିଲା ନାହିଁ । ସୁମିତ୍ରା କହିଚି ସିନେମା ଦେଖିଯିବା ପାଇଁ । ସମୟ ହୋଇଗଲାଣି । ଆଜି ଅଫିସକୁ ଯାଇ ନାହିଁ; ସନ୍ତୋଷ ବିରକ୍ତ ହୋଇ ପାରେ । ହେଉ, ଛାଡ଼ କଣ ?

ମନେଅଛି ? ମନେଅଛି ସେଦିନର କଳ୍ପନା ଓ ଜଳ୍ପନା ? ମନେଅଛି ସେଦିନର ସ୍ପର୍ଶ ଓ ଝଙ୍କାର ? ମନେଅଛି ଗୋଟିଏ ପରମ କୋମଳ ଅଙ୍ଗଲତାର ନିବିଡ଼ ଉଷ୍ମ ସ୍ପନ୍ଦନ ? ଅତୀତର

ସେଇ ମୁହୂର୍ତ୍ତରେ...ତାର ସଦ୍ୟସ୍ନାତ କପାଳରେ ଲଗି ରହିଥିଲା ଚନ୍ଦନର ବିନ୍ଦୁ, କରୁଣ ଆଖିରେ ସ୍ନିଗ୍ଧ ଗୃହିଣୀର ବିହ୍ୱଳତା । ପୂଜାରତା ରାଧାର ଆରକ୍ତ ଗଣ୍ଡରେ ଜମି ଉଠିଥିଲା ସଲ୍ଲଜ ଭଙ୍ଗୀ । ପ୍ରଶାନ୍ତ ନୀରବ ରାଧୀର ସ୍ନିଗ୍ଧ ବକ୍ଷର ମୁହୂର୍ତ୍ତ ପରି ସେ ହୁଏତ ସ୍ନିଗ୍ଧ, ମଧୁର । ରାଧା ଆଜି ବର୍ତ୍ତମାନର ସ୍ପର୍ଶରେ ତାର ଅସ୍ତିତ୍ୱ ହରାଇ ବସିଛି । ରାଧାକୁ ଭୁଲିବାକୁ ପଡ଼ିବ ଅନେକ ଜୀବନ ମନେ ରଖିବା ପାଇଁ । ରାଧାକୁ ତ୍ୟାଗ କରିବାକୁ ପଡ଼ିବ ଜୀବନର ବିରାଟ ଲକ୍ଷ୍ୟ ପାଇଁ—ଅଥଚ ଜୀବନର ସେ ବିରାଟ ଲକ୍ଷ୍ୟ କଣ ?

ରାଧା, ମାନସୀ ପ୍ରେମିକା ରାଧା କାହିଁ ତୁମେ ? କେଉଁ ଦୂରରେ ଅଜଣା ପାଷାଣ ପୁରୀରେ ହୁଏତ ବନ୍ଦିନୀ ତୁମେ । ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ନିଷ୍ଫଳ ପ୍ରତୀକ୍ଷାରେ ଅଶ୍ରୁ ଢାଳୁଚ ! ନା, ନା, ତୁମେ ଭୁଲିଚ ମୋର ଅସ୍ତିତ୍ୱ । ଭୁଲିଯାଇଚ ଅତୀତର ସେ ମଧୁମୟ ସ୍ମୃତି-ବହୁଳ ମୁହୂର୍ତ୍ତ ! ହରାଇଚ ସେଦିନର କମ୍ପନ । କ୍ଷତି କଣ ? ତମର ତାହା ଦୋଷ ନୁହେଁ, ତମର ତାହା ଦୁର୍ବଳତା ନୁହେଁ; ସ୍ୱାଭାବିକ ! ମନୁଷ୍ୟର ଗତି ପଥରେ ବିସ୍ମରଣ ଆବଶ୍ୟକ ।

ରାଧାର ଫଟୋଟି ପକେଟରୁ ବାହାର କଲା କାହ୍ନୁ । ଅନେକ ଦିନ ତଳର ସଂଗ୍ରହ । ଟିକି ଟିକି କରି ଚିରି ଫିଙ୍ଗିଦେଲା ରାସ୍ତା ଉପରକୁ । ଆଜି ମାନସୀ ରାଧାର ମୃତ୍ୟୁ ହୋଇଯାଇଚି ଅତି କରୁଣ ଭାବରେ ।

ହେ ପ୍ରିୟ, ହେ ବନ୍ଧୁ, ହେ ସାଥି ! ବିଦାୟ, ବିଦାୟ ! ଜାଣେନା ଆଉ କେବେ ଭବିଷ୍ୟତରେ ତମ ସହିତ ସାକ୍ଷାତ ହେବ କି ନାହିଁ, ଜାଣେନା ଆମର ସେ ମଧୁ ମୁହୂର୍ତ୍ତ କେବେ ପ୍ରତ୍ୟାବର୍ତ୍ତନ କରିବ କି ନା, ତଥାପି ଆମର ମିଳନ, ଆମର ସାକ୍ଷାତର ଆଉ ଆବଶ୍ୟକତା କଣ ? ଜୀବନର ଗତିପଥରେ ଦୁହେଁ ଦୁଇ ବନ୍ଧନ

ଗନ୍ତବ୍ୟପଥରେ ଆଗେଇ ଚାଲରେ । ଏଥିରେ ଆଉ ସାକ୍ଷାତ ହୋଇ ପାରେନା, ହେବା ଅସମ୍ଭବ । ତେଣୁ ହେ ସାଥି, ହେ ବନ୍ଧୁ ! ବିଦାୟ, ବିଦାୟ ।

ଚତୁର୍ଦ୍ଦିଗ ଯେପରି ଚିତ୍କାର କରି ଉଠୁଚି; ବିଦାୟ, ବିଦାୟ ! ଜୀବନର ରିକ୍ତ ଗନ୍ତବ୍ୟପଥ ମଣିଷକୁ ଉପହାର ଦେଇଚି ଏକମାତ୍ର କରୁଣ ବିଦାୟ ! କେଉଁ ଏକ କରୁଣ ଗୁଂଜରଣ ଖସି ବୁଲୁଚି ଯେପରି ତପ୍ତ ସମୀରଣରେ । ରାଧା ପାଖକୁ କାହିଁକି ଯାଇଥିଲା ସେ ? ରାଧାର ଶୋଚନୀୟ ମୃତ୍ୟୁରେ ଆନନ୍ଦ ପାଇବା ପାଇଁ ? ମାନସୀ ରାଧାକୁ କ୍ଷତ ବିକ୍ଷତ ରୂପେ ଦେଖିବା ପାଇଁ ?

ଗୋଟାଏ ଟାଉନ ବସକୁ ଉଠିଗଲା କାହ୍ନୁ । କଣ୍ଡକ୍ଟର ପଚାରିଲା, କେଉଁଠି କି ?

ଷ୍ଟେସନ । ଚାରଣିଟାଏ ବଢ଼ାଇ ଦେଲା କଣ୍ଡକ୍ଟର ହାତକୁ । କଣ୍ଡକ୍ଟର ଗୋଟାଏ ଟିକେଟ ଆଉ ଅଣାଟିଏ ବଢ଼ାଇ ଦେଲା । ବସ ପୂର୍ଣ୍ଣ ହୋଇ ଯାଇଚି । ଅନେକ ବେଳରୁ ପାନ ଖଣ୍ଡେ ପଡ଼ିଥିଲା ପକେଟରେ । କାହ୍ନୁ ପାନ ଚୋବାଇବାକୁ ଲାଗିଲା । ଉଃ, କି ଗରମ ! ମୁଣ୍ଡ ପାଗଳ ହୋଇଯିବ ଏ ଗରମରେ । ଟାଉନ ବସଟା ଗୋଟାଏ କରୁଣ ଆର୍ତ୍ତନାଦ କରି ଛୁଟିଚି ଷ୍ଟେସନ ପଥରେ । ପୃଥିବୀର ନିଷ୍ଠୁର ବନ୍ଧନରେ ଚିତ୍କାର କରି ଉଠୁଚି ହୃଦୟର ମୁକ୍ତି ପାଇଁ । ସହରର କୋଳାହଳ କିପରି ବିରକ୍ତିକର ଲାଗୁଚି । ଏ କୋଳାହଳକୁ ଧ୍ୱଂସ କରାଯାଇ ପାରନ୍ତା ଯଦି ! ରାଧାର ଆନତ ଆଖିରୁ ବହିଚାଲିଚି ଅଶ୍ରୁର ଧାର, ସେ ଚିତ୍କାର କରି ଉଠୁଚି, କାହ୍ନୁର ଜୟ ହେଉ··· ନା, ନା, ଧନର ଜୟ ହେଉ, ଧନର ଜୟ ହେଉ··· । ଅନ୍ତର ତଳୁ କିଏ ଯେପରି ବାରମ୍ବାର ଚିତ୍କାର କରି ଉଠୁଥିଲା, ହେ ସାଥୀ, ହେ ବନ୍ଧୁ, ବିଦାୟ, ବିଦାୟ !

କାହ୍ନୁ ବିରକ୍ତିରେ ବାହାରକୁ ଅନାଇଲା ।

ଷ୍ଟେସନ ।

ଷ୍ଟେସନର ମଝିରେ ଗ୍ୟାଲେରିର ପାଖ ରେଲିଂ ଉପରେ ବସି ରହିଛନ୍ତି କେତେଜଣ ତରୁଣୀ । ମୁଖରେ ଶସ୍ତା ପାଉଡର, ଦେହରେ ବମ୍ବେ ପ୍ରିଣ୍ଟେରସ୍‌ର ଛପା ଶାଢ଼ୀ, ଆଉ କାହାର ପ୍ରଦତ୍ତ ରଙ୍ଗୀନ ବ୍ଲାଉଜ୍ । ଦେହର ବେଶବିନ୍ୟାସ, ସୁସଜ୍ଜିତ କବରୀ ଲୁଚାଇ ପାରୁନି ଶୀର୍ଣ୍ଣ ରୋଗାକ୍ରାନ୍ତ ଆଉ କରୁଣ ଯୌବନକୁ । ମୁଖରେ ରୋଗ ଆଉ ବୟସର ସୁସ୍ପଷ୍ଟ ଛାପ୍ । ସେମାନଙ୍କ କବରୀରୁ ଭାସିଆସୁଛି ଗୋଟାଏ ଶସ୍ତା ଏସେନ୍‌ସର ବିରକ୍ତିକର ଗନ୍ଧ । ସନ୍ଧ୍ୟାର ମ୍ଳାନ ଆଲୋକରେ ଆଖିରେ ପଡ଼ୁନି ସେମାନଙ୍କର ଦେହ ମଧ୍ୟରେ ଗନୋରିଆ ଆଉ ସିଫିଲିସ୍ ଜୀବାଣୁଗଣ ।

ନିକଟରେ ଥିବା କଲେଜ ଉପରେ ଉଡ଼ୁଛି ସ୍ୱାଧୀନ ଭାରତର ମୁକ୍ତ ନାଗରିକଙ୍କର ପ୍ରତୀକ ତ୍ରିରଙ୍ଗ ଜାତୀୟ ପତାକା । ଜୀର୍ଣ୍ଣ ଶୀର୍ଣ୍ଣ ପତାକା ମୃଦୁ ପବନର ହିଲ୍ଲୋଳରେ ନାଚି ନାଚି ଉଠୁଛି ।

ହେ ସ୍ୱାଧୀନ ଭାରତର ନାଗରିକ ଗଣ ! ଏ ସ୍ୱାଧୀନତା କଣ ତମର କ୍ଷୁଧା ନିବାରଣ କରି ପାରିବ ? ନବଭାରତର ନୂତନ ସୂର୍ଯ୍ୟୋଦୟ ପାରିବନି ଲୁଚାଇ ତମ ଜୀବନର ସମସ୍ତ ରିକ୍ତତା, ସମସ୍ତ ଅଭିଶାପ ?

କେତେ ଜଣ ଯୁବକ, କଲେଜ ଛାତ୍ର ବୋଧହୁଏ, ସେମାନଙ୍କ ନିକଟରେ ବ୍ୟସ୍ତ ଭାବରେ ବୁଲୁଥାନ୍ତି । ଗୋଟାଏ ଭିକାରୀ ଆସି ହାତ ପତାଇଲା । ଭିକାରୀର ସମସ୍ତ ଶରୀରରେ ଦୈନ୍ୟ ଓ କ୍ଷୁଧାର ବାଙ୍ମୟ ବିବରଣ । ଶତଛିନ୍ନ ଅପରିଷ୍କୃତ ପରିଚ୍ଛେଦ ମଧ୍ୟରେ ଫୁଟି ଉଠିଛି ଜୀବନର ଅସଂଖ୍ୟ କ୍ଷତ, ଅସଂଖ୍ୟ ଅଭାବ, ଅଜସ୍ର ଯନ୍ତ୍ରଣା !

ଭିକାରୀଟି କଲେଜ ଛାତ୍ରମାନଙ୍କ ଆଗରେ ତାର ଶୀର୍ଣ୍ଣ ରୋଗ ପାଣ୍ଡୁର ହାତ ଦୁଇଟି ଦେଖାଇ ଅସ୍ପଷ୍ଟ ସ୍ୱରରେ କହିଲା, ବାବୁ ପଇସାଟିଏ !

ଜଣେ କହି ଉଠିଲେ, ସିଗାରେଟ ଖଣ୍ଡେ ଖାଇବାକୁ ପଇସା ମିଳୁନ, ଆଉ ତତେ ଦବୁ ? ଯା, ଯା—

ଭିକାରୀଟି ପୂର୍ବ ପରି ଚିତ୍କାର କରି ଉଠିଲା, ଖାଇନାହିଁ ବାବୁ !

ଜଣେ ଛାତ୍ର ସେଇ ତରୁଣୀମାନଙ୍କ ପାଖରେ ରହି କେଉଁ ଏକ ସଙ୍ଗୀତର ମୃଦୁ ଆଲାପ କରୁଥାନ୍ତି । ଆଉ ଜଣେ ଭିକାରୀକୁ ଧରି ଠେଲି ଦେଲେ । ଭିକାରୀ ତଳେ ପଡ଼ିଗଲା । ଜଣେ କହୁଥାନ୍ତି, ଯେତେକ ଭିକାରୀ ସବୁ ହେଉଛି ବଦମାସ ପକେଟମାରର ଦଳ, ପଇସା, ପଇସା ! ଯେପରି ପଇସା ଛଡ଼ା ଏ ପୃଥିବୀରେ ଆଉ କିଛିହିଁ ସୁନ୍ଦର ଜିନିଷ ନାହିଁ !

ସେମାନେ ଆଗେଇ ଗଲେ ସେଇ ତରୁଣୀମାନଙ୍କ ପାଖରେ । ବାଟରେ ଥିବା କନଷ୍ଟେବଲ୍ ସେ ପାଖରେ ଦୃଷ୍ଟିପାତ କରିଚ । ଓଠରେ ତାର ଦୁଷ୍ଟ ହସ ।

ଦେଶର ସ୍ୱାଧୀନ ପତାକା ଆକାଶରେ ଉଡ଼ୁଚି କପରି ସ୍ୱତନ୍ତ୍ର ଭାବରେ । ଆଗର ନିର୍ଯ୍ୟାତନା ସେପରି ଆଉ ନାହିଁ । ଅସ୍ପଷ୍ଟ ସ୍ୱରରେ କହି ଉଠୁଚି ସେ—ମାମେକଂ ଶରଣଂ ବ୍ରଜ, ମାମେକଂ···ମୋର ଆଶ୍ରୟ ନିଅ, ମୋର ଆଶ୍ରୟ ନିଅ !

କାହ୍ନୁ ପ୍ଲାଟଫର୍ମ ଉପରେ ବ୍ୟସ୍ତ ଭାବରେ ପଦଚାରଣ କରିବାକୁ ଲଗିଲା । କ'ଣ ଭାବୁଥିଲା ସେ ? ନା, ନା, କିଛି ନୁହେଁ । ଷ୍ଟେସନ କାହିଁକି ଆସିଲା ?, ବରଂ ସେତିକି ପଇସାରେ କିଛି ଜଳଖିଆ ଖାଇଥିଲେ ହୋଇଥାନ୍ତା । ଆଜି ଅଫିସକୁ ଯାଇ ନାହିଁ, କାହିଁକି

ନ ଗଲା ? ହଁ, କାହିଁକି ? ସନ୍ତୋଷ ପଚାରିଲେ କି ଉତ୍ତର ଦେବ ? କହିବ, ରାଧା ପାଖକୁ ଯାଇଥିଲି । ନା-ନା-ନା କିଚ୍ଛି ନୁହେଁ । ମିଛ, ମିଛ ! ଦେହ ଖରାପ ଥିଲା, ମୁଣ୍ଡ ବୁଲାଉଥିଲା । କ'ଣ କହିବ ସେ ? ଓଃ ! କି ବିରକ୍ତିକର ଏ ଜୀବନ ! ପଞ୍ଜୁରୀର ବନ୍ଦୀ ବିହଙ୍ଗ ପରି ତାର ଆଜି ସ୍ୱାଧୀନତା ନାହିଁ । ଗତିର ସ୍ୱଚ୍ଛୋଳ ପାଦରୁ ଆଜି କାଢ଼ି ନେଇଛି ପରାଧୀନତା ! ପଞ୍ଜୁରୀର ଲୌହ ବେଷ୍ଟନୀ ମଧ୍ୟରେ ଗତିମୁକ୍ତ ପକ୍ଷ ତାର ସ୍ତବ୍ଧ ପଡ଼ିଛି !

ରେଲିଂ ଉପରେ ସେଇ ତରୁଣୀଗଣ, ଦେହର ମାଂସ ବିକ୍ରୀ ଯାହାଙ୍କର ବଞ୍ଚିବା ପାଇଁ ଏକମାତ୍ର ପଥ, ଦେଶର ଅଗଣିତ ଭବିଷ୍ୟତ କର୍ମଧାରଙ୍କର ମାଂସ କ୍ଷୁଧା ନିବାରଣ କରିବା ଯାହାଙ୍କର ଧର୍ମ, ମାଂସ ଶେଷ ହୋଇ ଆସିଲେ କ'ଣ କରିବେ ? ହେ ସ୍ୱାଧୀନ ବନ୍ଧୁ, ଭାବିଛ କି କେବେ ସେମାନଙ୍କର ଭବିଷ୍ୟତ ? ଭାବିଛ କି କେବେ ସେମାନଙ୍କର ବଞ୍ଚିବାର ଉପାୟ ? ନା, ନା, ସ୍ୱାଧୀନତା ସୂର୍ଯ୍ୟର ପ୍ରଖର ରଶ୍ମି ଆଖିକୁ ତମର ଅନ୍ଧ କରି ଦେଇଛି । ତମର ବଧିର କର୍ଣ୍ଣରେ ବାଜି ନାହିଁ ଅସଂଖ୍ୟ କୋଟି କୋଟି ନର ନାରୀଙ୍କର ଏଇ ଆକୁଳ କ୍ରନ୍ଦନ ।

ସେଇ ତରୁଣୀଗଣ ! ମନ୍ଦ କଣ ? କାହିଁକି ଆସେଇ ଗଲା ସେମାନଙ୍କ ଦଗରେ ! ନା, ଅନ୍ୟାୟ, ଅପରାଧ ! ଅପରାଧ ! ଏଇ ବାର୍ଦ୍ଧକ୍ୟକୁ ଲୁଚାଇବା ପାଇଁ ନିଜକୁ ଅପୂର୍ବ ଭାବରେ ସଜାଇ ବସିଛି ସେ ଯେଉଁ ବିଳାସିନୀ, ସେ ଚାହିଁଛି ! ଆଖିରେ ତାର ବ୍ୟର୍ଥତାର କାହାଣୀ । କ୍ଷୁଧାର ମର୍ମନ୍ତୁଦ ଯନ୍ତ୍ରଣା ଖେଳି ଉଠିଛି ତାର ସାରା ଦେହରେ । ସମସ୍ତେ ଚାଲିଗଲେଣି । କିନ୍ତୁ ବିଚରା ଏକାକିନୀ ବସି ରହିଛି କେଉଁ ମାଂସ ପିପାସୁ ବିଳାସୀର ପ୍ରତୀକ୍ଷାରେ । ସେ ବିଳାସୀ କିଏ ଆସିବ ? ଆସିବ ତାର ବାର୍ଦ୍ଧକ୍ୟର ମାଂସକୁ ଖାଇବା ପାଇଁ ? ନା, ଆସିବ ନାହିଁ

ସେ ଜାଣେ, କେହି ଆସିବେ ନାହିଁ । ତଥାପି ପ୍ରତୀକ୍ଷାରେ ବ୍ୟସ୍ତତା ନାହିଁ, ହରାଇବାରେ ଦୁଃଖ ନାହିଁ, ପାଇବାରେ ହୁଏତ ଆନନ୍ଦ ହେବ ନାହିଁ । ତଥାପି ବସିଛି—କେଉଁ ଏକ ଉଦାର ତପସ୍ୱୀପରି, ନିଜର ଉଦାରତାରେ ପୁଣ୍ୟ ପାଇବା ପାଇଁ ! ଅପରାଧ ? ଯଦି ତାକୁ ଏକ ଟଙ୍କା ଦିଆଯାଏ ତାର ମାଂସର ବିନିମୟରେ, କ୍ଷତି କଣ ? ତାର ବଞ୍ଚିବାରେ ଯେ ସାହାଯ୍ୟ ହେବ ! କିନ୍ତୁ ଅନ୍ୟାୟ ଅପରାଧକୁ ବଞ୍ଚିବାପାଇଁ ସାହାଯ୍ୟ ଦେବା କଣ ଉଚିତ ? ବଞ୍ଚିବ କିପରି ? ମାଂସ ସରିଯାଇଛି, ଯୌବନ ଲିଭିଯାଇଛି, କିନ୍ତୁ ସରି ନାହିଁ ବଞ୍ଚିବାର ଆକାଙ୍‌କ୍ଷା, ଲିଭି ନାହିଁ ବିକଟ କ୍ଷୁଧା, ହଜି ନାହିଁ ଜୀବନର ରୁକ୍ଷତା, ଦୈନ୍ୟର ନିର୍ମମ ଅଭିଶାପ !

ବେଶୀ ଦୂର ଯିବାକୁ ପଡ଼ିଲା ନାହିଁ, ସେ ରେଲିଂ ଉପରୁ ଉଠି ଆସିଲା ଆପେ । 'ବାବୁ' । କାହ୍ନୁକୁ କହିବାକୁ ଅବସର ନ ଦେଇ ଆଗେଇ ଚାଲିଲା ସେ । କାହ୍ନୁ ତା ପଛେ ପଛେ ଚାଲିଲା । ବାରମ୍ବାର ପଛକୁ ଚାହୁଁଥାଏ । ମନଭିତରେ ସନ୍ଦେହ, ଶିକାର ଖସି ଯାଇ ପାରେ ।

ନିର୍ଜନ ପ୍ରାନ୍ତର । ରାସ୍ତା କଡ଼ରେ ମ୍ୟୁନିସପାଲିଟିର ମ୍ଳାନ ଆଲୋକ ସ୍ତମ୍ଭ । ସେ ଆଲୋକ ସ୍ତମ୍ଭର ନିକଟରେ ଠିଆ ହୋଇ ଡାକିଲା, ବାବୁ !

କାହ୍ନୁ ଆଗେଇ ଗଲା । ମୁହଁରେ ବୟସର ଗଭୀର ରେଖାପାତ । ଆଖି ତଳେ ଗଭୀର କଳାରେଖା । କପାଳର କୁଞ୍ଚିତ ରେଖା କହୁ-ଥିଲା ତାର ବଞ୍ଚିବା ପାଇଁ କି ଅବିଶ୍ରାନ୍ତ ସଂଗ୍ରାମ ! କାହ୍ନୁ ତା' ହାତରେ ଗୋଟିଏ ଟଙ୍କା ଦେଲା । କାହ୍ନୁର ହାତକୁ ଧରି ପକାଇ ସେ କହିଲା, ବାବୁ ବେଶୀ ଦୂର ନୁହେଁ ।

ବିସ୍ତୀର୍ଣ୍ଣ ପ୍ରାନ୍ତର । ଦୁହେଁ ଯାଇ ବସିଲେ । କାହ୍ନୁ ପଚାରିଲା, ତମ ନାଁ କ'ଣ ?

ସୀତା ।

ବାଃ, ବେଶ୍ ସୁନ୍ଦର ନାଁ ଟିଏ ତ !

ଚୁର'ଣା ପଇସା ଦଅ, ଟଙ୍କାଟିଏ କାହିଁକ ଦେଲ ? ଚେଙ୍ଗା ନାହିଁ ।

ମୁଁ ଫେରାଇ ନେବାକୁ ଚାହେଁ ନାହିଁ ।

ସୀତାର ବକ୍ଷ ଭେଦ କରି ଗୋଟିଏ ଦୀର୍ଘଶ୍ୱାସ ବାହାରିଗଲା । ଆକାଶରେ ଦିଗ୍‌ଭ୍ରଷ୍ଟର ବଙ୍କିମ ଚନ୍ଦ୍ର । ତଳେ ବିସ୍ତୀର୍ଣ୍ଣ ନିର୍ଜନ ପ୍ରାନ୍ତରରେ ବିପୁଣ୍ଡା ସୀତା ଆଉ କାହ୍ନୁ !

ତିନି ଓଳ ହେଲା ଉପାସ ବାବୁ ।

ସତେ !

ଆଜକାଲି ଆଉ କେହି ଆସୁନାହାନ୍ତି । ଝିଅଟିଏ ଥିଲା । ସେ ଚାରି ବର୍ଷ ହେଲା ମରିଗଲାଣି । ସେ ଯଦି ବଞ୍ଚିଥାଆନ୍ତା !

କାହ୍ନୁ ଉଠିକରି ଯିବାକୁ ବାହାରିଲା । ତା ହାତ ଧରି ପକାଇ ସୀତା କହିଲା, ବାବୁ !

ନା, ମୁଁ ଯାଉଛି ।

ସୀତା ଟଙ୍କାଟା ପଣତରୁ ବାହାର କଲା, ତମ ଟଙ୍କା ନିଅ ତେବେ ।

ନେବି ନାହିଁ ।

ଜାଣେ, ମୋ ବୟସ ତ ଗଡ଼ିଗଲାଣି । ଝିଅଟା ଯଦି ବଞ୍ଚିଥାଆନ୍ତା ! ଆଉ ଥରେ ତାର ରୁଗ୍‌ଣ ପିଞ୍ଜର ଭେଦ କରି ଗୋଟିଏ ଦୀର୍ଘଶ୍ୱାସ ବାହାରି ଗଲା ।

କାହ୍ନୁ ରାସ୍ତା ଉପରକୁ ଉଠିଆସିଲା । ଆଗରେ ଆସି କାର୍‌ଟା-ଏ ବ୍ରେକ୍ କଲା ।

ମଟରର ଭିତରୁ ସୁମିତ୍ରା ଡାକିଲା, ବାଃ ! ତମକୁ କେତେ ଖୋଜିଲିଣି, ଆସ ।

ସୀତା ଡାକ ପକାଇଲା, ବାବୁ ଟଙ୍କା ନଅ—ନଅ । କାହ୍ନୁ ମଟରରେ ବସି ସାରିଥିଲା । କହିଲା, ଚାଲ ।

ସୁମିତ୍ରା ଖୁବ୍ ବେଗରେ କାର ଛୁଟାଇଦେଲା । ସୀତାର ଚିତ୍କାର ଲିଭିଗଲା ମଟରର ଶବ୍ଦରେ ।

ଛି, ଛି, ତମେ ଏତେ ତଳକୁ ଯାଇପାର ?

କାହ୍ନୁ କହିଲା, କଣ ହେଲା କି ?

କଣ ହେଲା କି ? ମୁଁ ଜାଣେ ନାହିଁ କହୁଛ ! ସେ ଝିଅଟା ଆଗରେ କଏ ଡାକୁଥିଲା, ନଅ, ନଅ ! ବାସ୍ତବିକ ତମେ ଏତେ ଖରାପ ହୋଇ ଯାଇଛ ମୋର ଧାରଣା ନଥିଲା ।

ସତେ !

ଏତେ ବୁଦ୍ଧିମାନ ହୋଇ ଏପରି କହିବା କଣ ଉଚିତ ?

ମଟରର ଖୁବ୍ ଅଳ୍ପ ଆଲୋକରେ କାହାର ଏ ଭସ୍ମାର୍ତ୍ତ, ଶୀର୍ଣ୍ଣ, ରୋଗ ପାଣ୍ଡୁର ମୁଖ ? ସୀତାର ? ହା-ହା-ହା-ସୀତାର ! ସତୀ ସାଧ୍ୱୀ ସୀତାର ନା, ନା, ବିଳାସିନୀ ସୀତାର, ଯାହାର ଅନୁଶୋଚନା ସେଇ ମୃତ ଝିଅଟି ପାଇଁ ଯେତେ ନୁହେଁ, ସେତେ ତାର କୋମଳ ସ୍ୱାଦୁ ମାଂସ ପାଇଁ, ସ୍ୱାଧୀନ ଭାରତର ଅଗଣିତ ରୂପପିପାସୁ ନାଗରିକମାନଙ୍କ ପାଇଁ । ଯେଉଁ ତରୁଣୀର ପେଶୀ ବହୁଳ ଚିକ୍କଣ ମାଂସ ଶାନ୍ତି ଦେଇଥାନ୍ତା ଅସଂଖ୍ୟ ବିଳାସୀ ଦେଶର ଭବିଷ୍ୟତଙ୍କୁ, ତାହା ଆଜ ପୃଥିବୀ, ବାୟୁ ଓ ଜଳର ସ୍ପର୍ଶରେ ଶୂନ୍ୟ ହୋଇ ଯାଇଛି ! କି ନିର୍ମମ ଏଇ ପ୍ରକୃତି ! କି ନିଷ୍ଠୁର ସେ ବିଧାତା ! କି ହୃଦୟହୀନ ସେ ଭଗବାନ !

ଆଜ କାହିଁକି ଅଫିସ ଗଲନାହିଁ ଶୁଣେ ?

ଶୁଣିବା ଦରକାର ନାହିଁ ।

ତଥାପି, ଜାଣିବାକୁ ଚାହୁଁଛି ।
ଜାଣିବାକୁ ଚାହିଁଲେ, ଶୁଣିବାକୁ ପଡ଼ିବ । ତେଣୁ—
ତେଣୁ ଶୁଣିବାକୁ ଚାହୁଁଥିଲ ।
ତେବେ ଖରାପ ଲାଗିଲା !
ମିଛ ।
କାମ ଥିଲା ।
ମିଛ ।
ଶୋଇ ପଡ଼ିଲ ।
ମିଛ କଥା ।
ସତେ !
ସୁମିତ୍ରା ଖେଁ ଖେଁ ହୋଇ ହସି ଉଠିଲା ।
କାହ୍ନୁ କହିଲା, ତେବେ ?
କହିବା ଦରକାର ନାହିଁ ।
ପଚାରୁଥିଲ କାହିଁକି ?
ଜାଣେ, ତମେ ପରା ରାଧା ଘରକୁ ଯାଇଥିଲ ।

କାହ୍ନୁ ଅନାଇଲା ବାହାରକୁ । ସୁଉଚ୍ଚ ପ୍ରାସାଦମାଳା, ଆକାଶ ବକ୍ଷକୁ ଗର୍ବୀତ ଭାବରେ ସ୍ପର୍ଶ କରୁଛି । ସାଇନ୍ ବୋର୍ଡ଼, ସେଠ୍ ବଶନ୍ ଦୟାଲ ଧରମ ଚାନ୍ଦ, ସେଠ୍ ରାମଗୋପାଳ, ସେଠ୍ ମଦନ ଲାଲ, ଜୟଚାନ୍ଦ ବ୍ୟାଙ୍କ; ସେଠ୍ ବନାରସୀ ଦାସ ମଦନ ଦାସ, ଜ୍ୱେଲରସ୍, ଅଳଙ୍କାର ବ୍ୟବସାୟୀ, ନାସ୍‌ନାଲ ଇନ୍‌ସୁରେନ୍‌ସ କୋ:, ନରେନ୍ଦ୍ର ସାହୁଙ୍କର ମିଷ୍ଟାନ୍ନ ଭଣ୍ଡାର··· । ଏଇ ପ୍ରାସାଦମାଳା ଭିତରୁ ଉଠୁଛି ଯେପରି ସୀତାର ଦୀର୍ଘଶ୍ୱାସ, ଝିଅଟା ସଦା ବନ୍ଧା ଥାଆନ୍ତା ! ବାସ୍ତବିକ ଝିଅଟା ସଦା ବନ୍ଧାଥାଆନ୍ତା ! ଏଇ ଗୋଟାଏ ରିକ୍‌ସା ସଙ୍ଗେ ବର୍ତ୍ତମାନ ଧକ୍‌କା ଲାଗିଥାନ୍ତା, ତୁମି ଦେଖିକରି ନଅ,

ଆକ୍‌ସିଡ଼େଣ୍ଟ । ସୁମିତା ମଟର ଡ୍ରାଇଭ୍ କରିବାରେ ଲାଗିଛି ।
ମିଥ୍ୟାବାଦୀ ! କିଏ ମିଥ୍ୟାବାଦୀ ? କାହ୍ନୁ ନା ସୁମିତା ? କାହ୍ନୁ,
କାହ୍ନୁ । କାହିଁକି ମିଛ କହିଲି ? ସୁମିତା ଜାଣିଲେ କ୍ଷତି ବା କଣ ?
ଭୁଲ, ଭୁଲ ହୋଇଗଲା । ଏହାକୁ ସଂଶୋଧନ କରିବାର ଉପାୟ
ନାହିଁ ? ସୁମି, ସୁମି, ଏ କଣ ? ଥିଏଟର ଯିବନା କଣ ?

ସୁମିତା ମଟରକୁ ଥିଏଟରର ଗ୍ୟାରେଜ ଭିତରେ ପୁରାଇ
ପୁରାଇ କହିଲା, ନଷ୍ଟସ୍ୱ !

ନା, ନା, ଆଜି ଆଉ କାଲି ବରଂ ଯିବା ।

କାହିଁକି ?

କେମିତି ଖରାପ ଲାଗୁଚି ।

ନା, ଆଉ କେଉଁ ରାଧା ପାଖକୁ ଯିବ ?

କି ତୀବ୍ର ସୁମିତାର ଏ ଦଶଂନ ! ହୃଦୟର ପ୍ରତି ଅଂଗକୁ
ଦଂଶନ କରୁଚି !

ସୁମି, ଚାଲ ଆଜି ଆଉ ।

ସୁମିତା ମଟର ଗ୍ୟାରେଜ ଭିତରୁ ମଟର ବାହାର କଲା ।
ମଟର ରାସ୍ତା ଉପରେ ଛୁଟିଲା । ଆଗରେ ନରସିଂହ ରୋଡ଼, ପ୍ରଧାନ
ମନ୍ତ୍ରୀଙ୍କ ନାମ ଅନୁସାରେ ଦିଆଯାଇଚି । ଝୁଇଲାଇଟ୍ ବାର, ଗ୍ରୀନ୍
ବାର—ଆର ପାଖକୁ ମହାତୀର୍ଥ ବେଶ୍ୟାପଲ୍ଲୀ, ସେ ପଟକୁ ଦେଶୀ
ମଦ ଦୋକାନ ଗୋଟାଏ । ପଞ୍ଚାଏ ବାହାରି ଆସିଲେ ସେଇ
ଗ୍ରିନ୍ ବାର ଭିତରୁ···

ମଟର ଚାଲିଚି, ଆଧୁନିକ ସଭ୍ୟତା ଓ ସଂସ୍କୃତିର କେନ୍ଦ୍ରସ୍ଥଳୀ
ମଧ୍ୟରେ । ଏଇ ଗୋଟାଏ ମାତାଲ ନା, ନା, ଗୋଟାଏ ସଭ୍ୟ
ସଂସ୍କୃତ ମଟର ଆଗରେ ପଡ଼ି ଯାଇଥାନ୍ତା । ସେ ହଏତ ପ୍ରଧାନ ମନ୍ତ୍ରୀ
ହୁଅନ୍ତା ! ଦେଶଟାର ନାମକରଣ ତା ନାମ ଅନୁସାରେ କରନ୍ତା ।

ଆଗାମୀ ଶତ ଶତ କୋଟି କୋଟି ବର୍ଷ ଧରି ନାଗରିକଗଣ ଭୁଲି ପାରନ୍ତେ ନାହିଁ ତାଙ୍କୁ । ସହରର ରାଜପଥ ଉପରେ ଶୋଭାଯାତ୍ରା ମଧ୍ୟରୁ ଚତ୍କାର ଶୁଭନ୍ତା, ମହାତ୍ମା କାହ୍ନୁଙ୍କର ଜୟ ହେଉ, ମହାତ୍ମା— । ପ୍ରଧାନ ମନ୍ତ୍ରୀ ରାଜନୈତିକ ନେତା ମାନ୍ୟବର ନରସିଂହ ଜଣେ ଐତିହାସିକ, କବି, ଚିତ୍ରକର, ନାଟ୍ୟକାର । ସଙ୍ଗୀତ ସଭାର ସଭାପତିତ୍ୱ ମଧ୍ୟ କରିଚନ୍ତି ! ସେ ଯନ୍ଧ ହୋଇ ପାରନ୍ତା ଏକାଧାରରେ ଐତିହାସିକ, ଚିତ୍ରକର, ନାଟ୍ୟକାର, ସଙ୍ଗୀତଜ୍ଞ ! ଇତିହାସ କାହା ବିଷୟରେ ଲେଖନ୍ତା ? ଏଇ ଐତି-ହାସିକ ନରସିଂହ ବୋଉ ବିଷୟରେ ନା, ସେଠ୍ କଶିନ ଦୟାଲ ଧରମ ଗୁନ୍ଦଙ୍କ ବିଷୟରେ, ନା ସୀତାର ସେଇ ଝିଅଟି ବିଷୟରେ ? ଜନବହୁଳ ରାଜପଥ ଉପର ଶୋଭାଯାତ୍ରା ଚତ୍କାର କରି ଉଠନ୍ତା, ଏଇ ନରସିଂହ ବୋଉ ଅଧିବାସିନୀ ଓ ଅଧିବାସୀଗଣ ଚତ୍କାର କରି ଉଠନ୍ତେ, ଐତିହାସିକ କାହ୍ନୁଙ୍କର ଜୟ ହେଉ··· । ବାସ୍ତବିକ କାହ୍ନୁର ଜୟ ହେବ । ମୃତ୍ୟୁରେ ନା ଜୀବନରେ ? ଦୁଃଖରେ ନା ଆନନ୍ଦରେ ? ଅନ୍ଧକାରରେ ନା ଆଲୋକରେ ?

ମଠର ଜଣକ ଗେଟ୍ ପାଖରେ ରହିଲା । ହର୍ନ ଦେବାରୁ ଜଣେ କିଏ ଆସି ଗେଟ୍ ଖୋଲି ଦେଲା । ଗେଟ୍ ଭିତରକୁ ମଠର ନେଇ ନେଇ ସୁମିତ୍ରା ପଚାରିଲା, ମା ନୀହାଣ୍ଡ ଘରେ ?

ଦରୱାନଟି କହିଲା, ଅଛନ୍ତି ।

ବାବୁ ?

ସାବ ଟୁରରେ ଯାଇଛନ୍ତି ।

ଜଣେ ସୁଶ୍ରୀ, ଆଧୁନିକ ତରୁଣୀ ଦେଖା ଦେଲେ । ଇଲେକ-ଟ୍ରିକ୍ ଆଲୋକ ତାଙ୍କର ସୌନ୍ଦର୍ଯ୍ୟକୁ ଶତ ଗୁଣ ବୃଦ୍ଧି କରୁଚି । ପାହାଚରେ ଓହ୍ଲାଇ ଆସି କହିଲେ, କିଏ ସୁମିତ୍ରା ? ବାଃ ଭାରି

ଭଦ୍ର ତ ତୁ ! ସେ ଦିନ କହିଗଲୁ ଆସିବା ପାଇଁ, ଯାଇଚୁ ଯେ ଯାଇଚ ଦେଖାନାହିଁ !

ସୁମିତ୍ରା ମଟରର ଷ୍ଟାର୍ଟ ବନ୍ଦ କରି ବାହାରକୁ ଓହ୍ଲାଇ ପଡ଼ିଲା । କଣ କରିବି, ଜ୍ୱର ହୋଇଗଲା...

ତରୁଣୀ ଜଣକ ଟିକିଏ ବିଦ୍ରୂପ ମିଶା ସ୍ୱରରେ କହିଲେ, ଜ୍ୱର ହୋଇଗଲା ! ବାଃ—ଆଜି ତାରିଖ କେତେ ? ପନ୍ଦର ଦିନ ହେଲା କଣ କରୁଥିଲୁ ଶୁଣେ ?

ସୁମିତ୍ରା ତାଙ୍କ କାନ୍ଧରେ ନିଜର ଗୋଟିଏ ହାତ ରଖି କହିଲା, ଆଉ ଏଠାରେ ସେ ବିଷୟ ଚର୍ଚ୍ଚା କରିବା ଦରକାର ନାହିଁ । ଆସ ।

କାହ୍ନୁ ମଟରର ଭିତରୁ ବାହାରିଲା ।

ଏଇ ହେଉଛନ୍ତି ମୋର ବନ୍ଧୁ ଶ୍ରୀ କାହ୍ନୁ ଚରଣ...ଆଉ ଏ ହେଉଛନ୍ତି ମିସେସ ଧୀରେନ ମହାନ୍ତି ଆଲିଆସ ମିସେସ୍ କମଳା ମହାନ୍ତି !

କାହ୍ନୁ କମଳାଙ୍କୁ ନମସ୍କାର ହେଲା, କମଳା କାହ୍ନୁକୁ ।

ତିନିହେଁ ଯାଇ ବସିଲେ ତଳ ମହଲାର ଗୋଟାଏ ସୁସଜ୍ଜିତ ଘରେ । ରେଡ଼ିଓଟା ଖୋଲୁ ଖୋଲୁ କମଳା ଚିତ୍କାର କଲା, ବସ୍ତୁ, ବସ୍ତୁ !

ଗୋଟିଏ ଦଶ ବାର ବର୍ଷର ପିଲା ଆସିଲା ।

ଯା, ତିନି କପ କଫି, ସିଗାରେଟ ଟିଣ ।

ବସ୍ତୁ ଚାଲିଗଲା । ରେଡ଼ିଓ ସମ୍ବାଦ ପରିବେଷଣ ଚାଲିଛି... ଆସନ୍ତା ତିନି ମାସ ମଧ୍ୟରେ ଜିନିଷ ପତ୍ରର ଦାମ କମିଯିବ ବୋଲି ସରକାର ବିଶ୍ୱାସ କରୁଛନ୍ତି । ପ୍ରଧାନ ମନ୍ତ୍ରୀଙ୍କର ଭାଷଣ । ସବୁ ରାଜ୍ୟ ମୁଖ୍ୟ ମନ୍ତ୍ରୀଙ୍କର ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀ । ଭାରତକୁ ଖାଦ୍ୟ ବିଷୟରେ ସ୍ୱାବଲମ୍ବୀ କରିବାପାଇଁ ଦଶ ଜଣ ବିଶେଷଜ୍ଞଙ୍କୁ ପୃଥିବୀର

ବିଭିନ୍ନ ସ୍ଥାନରୁ ଅଣାଯାଇଛି । ଚୀନ ଜାପାନ ସରକାରଙ୍କର ସୈନ୍ୟ ବାହିନୀ ବୀରତ୍ୱ ସହକାରେ ପଛଘୁଞ୍ଚା ଦେଉଛନ୍ତି, ଚୀନ ଜାପାନ ସରକାରର ପ୍ରଧାନ ମନ୍ତ୍ରୀ ବେତାର ଭାଷଣ ଦେଇ କହିଛନ୍ତି ଆଗାମୀ ଛ' ମାସ ଭିତରେ ଆମର ବିଜୟ ସୁନିଶ୍ଚିତ...

ହିଟଲର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ହୁଏତ କହିଥିବେ ଆମର ବିଜୟ ସୁନିଶ୍ଚିତ ! ନା, ନା, କି ଅସହ୍ୟ ଏ ଖବର ! ଦୟାକରି ବନ୍ଦ କରି ଦିଅ'ନା କମଳା ! କମଳା ! ଭଦ୍ରମହିଳା, ହୁଏତ ରୁଚି ବିରୁଦ୍ଧ ହେବ ।

ଏଥର ସଙ୍ଗୀତ, ମିସ୍ ସଂଯୁକ୍ତା ମହାନ୍ତି, କଣ୍ଠଟା ମନ୍ଦ ନୁହେଁ ! ଓଡ଼ିଶୀ, ନା ବିଦେଶୀ ସଙ୍ଗୀତର ଓଡ଼ିଆ ରୂପାନ୍ତର ? ଇଚ୍ଛା ହେଉଛି, ଏଇ ମୁହୂର୍ତ୍ତରେ ସେ ରେଡ଼ିଓଟାକୁ ଭାଙ୍ଗି ଚୁରମାର କରି ଦେବାକୁ । ନା, ଆଉ ସହିହେବ ନାହିଁ । କିଏ ଆବିଷ୍କାର କରିଥିଲା ଏଇ ରେଡ଼ିଓକୁ ? ମିସ୍ ସଂଯୁକ୍ତାଙ୍କୁ ଯଦି ପାଆନ୍ତା, ତାଙ୍କର ଶୁଭ୍ର ଉଜ୍ଜ୍ୱଳ ଗ୍ରୀବାକୁ ଦୁଇ ହାତରେ ଚିପିଧରି କହନ୍ତା, ଦୟା କରି ବନ୍ଦ କର ଅତ୍ୟାଚାର ।

ବୟ ସିଗାରେଟ ଟିଣ ଆଉ ତିନ କପ୍ କଫି ଗୋଟାଏ ଟ୍ରେରେ ନେଇ ଆସିଲା । କମଳା ଓ ସୁମିତ୍ରା ଉଠାଇ ନେଲେ କଫି ଦୁଇ କପ୍ ।

କାହ୍ନୁ କହିଲା, ମୁଁ ଖାଇବିନି ।

କମଳା ଆଶ୍ଚର୍ଯ୍ୟ ହେଲପରି କହିଲା, କଣ ଖାଆନ୍ତି ନାହିଁ ! ବଡ଼ ପିକୁଲିଆର ତ ଆପଣ । ଆଉ ଟିକିଏ ଗଲେ କହିବେ, ମୁଁ ସିଗାରେଟ ଖାଏ ନାହିଁ, କ୍ଷମା କରିବେ ।

ସୁମିତ୍ରା ଟିକିଏ କଫି ପିଇ କହିଲା, ସିଗାରେଟ ! ତାଙ୍କୁ ଏ ଘରର ଭୂତ ପାଏ ଭର୍ତ୍ତି କରି ଦେଲୁ ; ଘଣ୍ଟାକ ଭିତରେ ସବୁ ଶେଷ

ହୋଇ ଯାଇଥିବ ।

କମଳା କହିଲା ତା ହେଲେ, ବୁଝିଲି । ବସ୍ତୁ, ବସ୍ତୁ, ଯା ଦୁଇ ପେଗ୍ ସେଣ୍ ନେଇ ଆସିବୁ ।

କାହ୍ନୁ କହିଲା, ନା ।

ତେବେ ଦୁଇ ପେଗ୍ ହୁଇସ୍କି ?

ନା ।

ରମ୍ ?

ନା ମୁଁ ମଦ ଖାଏ ନାହିଁ ଜମା ।

ମଦ ? ହାଃ-ହାଃ-ହାଃ, ସୁମି ଦେଖୁଛୁ ତ, ଡ୍ରିଙ୍କ୍ ଖରାପ କଣ ?

ତୋର ସେ ସବୁ ଚଳେ କି ନା, ଟେଣ୍ଟ...ସୁମିଙ୍ଗ୍ କପି କପେ ଥୋଇ ଦେଇ କହିଲା । ସିଗାରେଟ ଟିଣରୁ ଦୁଇଟା ସିଗାରେଟ କାଢ଼ି ନିଜେ ଗୋଟିଏ ରଖି, ଆରଟି କାହ୍ନୁକୁ ଦେଲା । କାହ୍ନୁ ଦେଖିଲା ଟଙ୍କିକିଆ ନୋଟ ଗୁଡ଼ାହୋଇଛି ସିଗାରେଟରେ ।

ଟଙ୍କା !

କମଳା ଖଣ୍ଡେ ସିଗାରେଟରେ ନିଆଁ ଲଗାଇ ଲଗାଉ କହିଲା, ବେଶ୍ ନିଆଁ ଲଗାଅ...

ଟଙ୍କା ଲଗା ହୋଇଛି ଯେ ।

ଲଗା ହୋଇଥାଉ ।

କାହ୍ନୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା କମଳା ଆଡ଼େ । କମଳା ବେଶ ନିର୍ବିକାର ଚିତ୍ତରେ ସିଗାରେଟ ଖାଇବାରେ ଲାଗିଛି । ଟିଣଟା ଆଣି ଦେଖିଲା ସବୁ ସିଗାରେଟରେ ଗୁଡ଼ା ହୋଇଛି ଟଙ୍କିକିଆ ନୋଟ ।

କମଳା ଧୂଆଁର ଗୋଟାଏ କୁଣ୍ଡଳୀ କରି କହିଲା, ଜାଣିଛ, ଏମିତି ସିଗାରେଟ ଖାଇଲେ କି ଆନନ୍ଦ ଲାଗେ ? ଟଙ୍କା ପୋଡ଼ି ଗଲେ ନିଜ ଆଖି ଆଗରେ କି ସୁନ୍ଦର ଦିଶେ !

ସୁମିତ୍ରା ସିଗାରେଟର ଶେଷାଂଶ ଆସ୍‌ଟ୍ରେରେ ପକାଇ ଦେଇ କହିଲା, ଆଗୁ, ଗାନ୍ଧୀ ମେମୋରିଆଲ ଫଣ୍ଡକୁ ତତେ କିଛି ଦବାକୁ ହେବ । ମୁଁ ସେଥିପାଇଁ ଅଧିକ ତୁ ମୋତେ ପଚିଶ ହଜାର ଦେବାକୁ କହି ମୋତେ ଦଶ ହଜାର ଦେଇଛୁ ।

କମଳା କିଛି ସମୟ ନୀରବ ରହି କହିଲା, କଣ କରିବ ଟଙ୍କା ଟିକିଏ କମ୍ ହୋଇ ଯାଇଛି—ଏ ମାସଟା ବଡ଼ ଡଲ୍ ସିଜନ, ମୋଟେ ଦି'ହଜାର ହବ ଆଦାୟ ହୋଇଛି ।

ସୁମିତ୍ରା କହିଲା, ଏତେ କମିଗଲା କେମିତି ? ଲୋକେ କଣ ଦେଉ ନାହାନ୍ତି ଆଜି ? ତୁ ପରା ସେଦିନ କହୁଥିଲୁ, ଗୋଟାଏ କେସ୍ ଧରିଥିଲେ ବୋଲି ସେ ଲୋକଟା ଦଶ ହଜାର ଦବାକୁ କହୁଛି । କଣ ଦେଲା ନାହିଁ ନା କଣ ?

ଦେଇନାହିଁ ଆଜିଯାଏ । ତାପରେ ଜଣକ ଠାରେ ବାକି ଅଛି ପ୍ରାୟ ହଜାରେ ଟଙ୍କା, ଦେଇନାହିଁ ।

କାହ୍ନୁ କହିଲା, କଣ କଣ୍ଟ୍ରାକ୍‌ଟରୀ ?

ନା, ନା, ଏସ୍. ପି.; ପୁଲିସ ଏସ୍. ପି., ଆଣ୍ଟିକରପସନ ଡିପାର୍ଟମେଣ୍ଟ୍‌ଟା କିନ୍ତୁ ବେଶ ଥିଲା । ପ୍ରତିଦିନ ତିନିଶ, ଚରିଶ ।

କାହ୍ନୁ କାନ୍ଥକୁ ଅନାଇଲା । କାନ୍ଥରେ ଗୁଇନିଜ୍ ତରୁଣୀଙ୍କର ଉଲଙ୍ଗ ଛବି । କି ଅଦ୍ଭୁତ ସେମାନଙ୍କର ହସ ! ଏଇ ସେଇ ଯୌବନବତୀ ! ତା ମୁହଁରେ ବନ୍ଦ୍ରୁପର ହସ ଖେଳି ଉଠିଛି ଯେପରି ! ପୃଥିବୀର ଦୈନ୍ୟ ପ୍ରତି ଉପହାସ କରି ଉଠୁଛି ଯେପରି !

କମଳା କାହ୍ନୁ ପାଖକୁ ଲାଗି କାଉଚ୍ ଉପରେ ବସିପଡ଼ିଲା । କମଳା ଦେହରୁ ବିଦେଶୀ ଏସେନ୍‌ସ୍ ଲୁଜ ପାଉଡରରେ ମନୋରମ ଗନ୍ଧ ଭାସି ଆସୁଛି । ତାର ସିଲ୍‌କ ଶାଢ଼ୀ ଦେହକୁ ବେଶ ଆରାମ ଲାଗୁଛି । କିନ୍ତୁ—କୁ ଅଭଦ୍ର ଏ ଭଦ୍ରମହିଳା ! ଦେଶ କି ବଦଳୁଛି

ସେ ସେଣ୍ଟ୍‌ର ବାସନା ? ମନର ଗନ୍ଧେ, ରକ୍ତେ ବକ୍ଷ ବାଷ୍ପ ଭରି ଦେଉଛି ଯେପରି ! ସିଲକ ଶାଢ଼ୀ ଦେହରେ ଫୋଡ଼ ହେଲା ପରି ଲାଗୁଛି ! ହେ ନାରୀ, ହେ ପ୍ରିୟା, ହେ ମାନସୀ, ହେ ଶଯ୍ୟାସାଥୀ, କେତେଦିନ ଆଉ ଆଖିର ଭ୍ରୂବିଳାସରେ, ଦେହର ଯୌବନରେ, କଥାର ଗୁଞ୍ଜରଣରେ ଭୁଲାଇବ ଏଇ ସର୍ବହରା ନରକୁ ? ନା, ନା, ଦୟା କର, ମୁକ୍ତିଦିଅ ଏ ଅଧମ ନରକୁ ! ନାରୀ—ମାତା ରୂପେ କି ମହିମାମୟୀ, କିନ୍ତୁ ପତ୍ନୀରୂପେ, ଶଯ୍ୟାସାଥୀ ରୂପେ କି କୁତ୍ସିତ ! ମାତାର ଶାନ୍ତ କୋମଳ ଅଙ୍କ, ଆଶ୍ୱାସଦାୟକ ବକ୍ଷ, କି ଶାନ୍ତିମୟ ! କିନ୍ତୁ ଶଯ୍ୟାସଙ୍ଗିନୀର ମାଂସଳ ବକ୍ଷ ପେଷୀବହୁଳ ଅଙ୍କ କି ବିରକ୍ତିକର ! ନାରୀ ଆଖିର କଟାକ୍ଷରେ, ବକ୍ଷର ମାଂସରେ, କଣ୍ଠର ଗୁରୁ ଭାଷାରେ ଭୁଲାଇଚି ଉଦାସ ପୁରୁଷକୁ ! ତାପରେ ପଛରୁ ବିଦ୍ଧ କରିଚି ତୀକ୍ଷ୍ଣ ଛୁରିକା ! କି ବିଶ୍ୱାସଘାତିନୀ ଏଇ ନାରୀ, କି ନିର୍ମମ ଏଇ ଜାତି, କି ନିଷ୍ଠୁର ସେମାନଙ୍କର ବ୍ୟବହାର, କି ବୀଭତ୍ସ ସେମାନଙ୍କର ବ୍ୟବସାୟ !

ହେ ବିଳାସିନୀ ! କ୍ରୀଡ଼ାର ପୁତ୍ତଳିକା ପରି, ଜାପାନୀ ଖେଳନା ପରି କେତେଦିନ ନଚାଇବ ଆଉ ଏଇ ହତଭାଗ୍ୟ ପୁରୁଷ ଜାତିକୁ ? କେତେଦିନ ସ୍ନେହର ବନ୍ଧନରେ ବାନ୍ଧି ତିଳ ତିଳ କରି ହତ୍ୟା କରିବ ଏଇ ନିରୀହ ପୁରୁଷକୁ ? ସ୍ୱାଧୀନତା ନାମରେ କେତେ ଦିନ ଉଚ୍ଛୃଙ୍ଖଳ ହେବ ଆଉ ? ଏ ଅତ୍ୟାଚାରର ଶେଷ କେଉଁଠି ? ପୁରୁଷର ନିହିତ ସାମ୍ମୁଖ୍ୟ ଆଜି ଭାଙ୍ଗି ପଡ଼ିଚି ନାରୀର କଟାକ୍ଷ ତଳେ !

'ଏଇ ଅନ୍ଧକାର ତଳେ !

ସେଦିନ ପ୍ରିୟାର କର କଙ୍କଣ ଭିଡ଼ିଥିଲା ମୋର ଗଳେ ?'

ଏଇ ସେଇ ଅନ୍ଧକାର ଠିଆ ହୋଇଚି ! ଘନଶ୍ୟାମ, ନିଃସଙ୍ଗ ! ପ୍ରିୟା ପଳାୟନ କରିଚି ଆଉ କେଉଁ ପଥ ଗହଳ ସଂକୁଳ ସୁନ୍ଦର ଅନ୍ଧକାର ତଳକୁ !

କାହ୍ନୁ ବରଣ୍ଡାରେ ଠିଆହୋଇ କହିଲା, ମୁଁ ଆସେ ତେବେ ।

କାହ୍ନୁର ହାତ ଧରି ବସାଇ ଦେଇ ଦେଇ କମଳା କହିଲା, ବସନା !

ସୁମିତ୍ରା ଠିଆ ହେଲା, କହିଲା, ନା ଆମେ ଯାଉଚୁ । କିନ୍ତୁ ଏଥର ପହିଲା ପୂର୍ବରୁ ତୋର ବାକି ଟଙ୍କା ଶୁଝି ଦେଉ ଯେପରି ।

ବାରଣ୍ଡା ପାରି ହୋଇ ଆସିଲେ । ସେ ପଟକୁ ବସିଥିଲା ଚପରାଶୀ ଗୋଟାଏ ହନୁମାନ ପ୍ରଶ୍ନ ନେଇ । ଏମାନଙ୍କୁ ଦେଖି ଭୟରେ ଲୁଚାଇ ଦେଲା ତାକୁ ପକେଟରେ । କାହ୍ନୁ ପଛ ସିଟରେ ବସିଲା । ସୁମିତ୍ରା ଷ୍ଟାର୍ଟ ଦେଲା ।

ହନୁମାନ ପ୍ରଶ୍ନ ! ଚପରାଶିଟିର କି ପ୍ରଶ୍ନ ? କେଉଁ ପ୍ରଶ୍ନର ଉତ୍ତର ଖୋଜୁଚି ସେ ?

ସେଥର ପରୀକ୍ଷା ଦେଇ ସାରି ହନୁମାନ ପ୍ରଶ୍ନ ଦେଖିଥିଲା ସେ—ପରୀକ୍ଷାରେ ପାଶ୍ ହେବ କି ନାହିଁ । ବାହାରିଲା, ଶ୍ରୀ ରାମଚନ୍ଦ୍ର କହୁ ଅଛନ୍ତି ନିକଟରେ ପୁଅଟିଏ ହେବ । ଦୁଃଖ କର ନାହିଁ । ହାଃ-ହାଃ-ହାଃ । ଚପରାଶି ହୁଏତ ପଚାରୁଥିବ, ଏବର୍ଷ ଦରମା ବଢ଼ିବ କି ନାହିଁ । ଉତ୍ତର ହୁଏତ ପାଇବ, ତୁମର ଶତ୍ରୁ ନିପାତ ହୋଇ ଅଛନ୍ତି—। ହଠାତ୍ ଷ୍ଟାର୍ଟ ବନ୍ଦ ହୋଇଗଲା । ସୁମିତ୍ରା ଓହ୍ଲାଇ ପଡ଼ି ଆଗ ପଟ ମେସିନ୍‌ଟାରେ ଟର୍ଚ୍ଚ ପକାଇ ଦେଖିବାକୁ ଲାଗିଲା ।

କିଏ କାନ୍ଦୁଚି ? ଗଉରୀ ? ହଁ, ହଁ ଗଉରୀ ଘର ତ ।

ସୁମି ଏଇଠୁ ମୁଁ ଆସୁଚି ।

ସୁମିତ୍ରାର ଉତ୍ତରକୁ ଅପେକ୍ଷା ନ କରି କାହ୍ନୁ ଦଉଡ଼ି ଗଲା ଦୁଆର ବନ୍ଦ ନିକଟକୁ । ଡାକିଲା, ଗଉରୀ ଗଉରୀ !

କିଛି ସମୟ ପରେ କବାଟ ଫିଟିଲା । ଗଉରୀ କହିଲା, ତମେ ?

କାହ୍ନୁ ଦଉଡ଼ି ଗଲା ଘର ଭିତରକୁ । ଛିଣ୍ଡା ସପ ଉପରେ ଶୋଇଛି ଗଉରୀର ତିନି ବର୍ଷର ପୁଅ । ଦେହରେ ହାତ ମାରିଲା, ଭୀଷଣ ଜର ! ଦେହରେ କଣ୍ଟା ଉଠିଲାଣି ।

ଗଉରୀ ! ମତେ ଖବର ଦେଇ ପାରିଲୁନି ?

ସେ ଜାଣି କହିଥିଲା ତାର ଠିକଣା ? ଗଉରୀ କାହିଁକି ଯାଇଥାନ୍ତା ତା ପାଖକୁ ? କି ଦାୟିତ୍ୱହୀନ ସେ । କି ହୃଦୟହୀନ ସେ ।

ଗଉରୀ ଗଉରୀ !

କାହ୍ନୁ ଅସ୍ୱସ୍ତି ବୋଧକଲା । ଯେପରି ନିଶ୍ୱାସ ବନ୍ଦ ହୋଇ ଆସୁଛି । ଦେହ ହାତରୁ ଚଳନ ଶକ୍ତି ଲୋପ ପାଇଛି ଯେପରି । କଣ କରିବ ସେ ? ଗଉରୀ ଖବର ଦେଇ ପାରିଲୁନି ? ନା, ନା, ମୋ ଦୋଷ !

କଣ ହୋଇଛି ? ସୁମିତ୍ରା ଘର ଭିତରକୁ ପଶି ଆସିଲା ।

ଜର ! ତମ କାରଟା ଦେଇ ପାରିବ ? ସ୍କୁଲ ଡାକ୍ତରଖାନା ନେଇ ଯାଆନ୍ତେ । କେତେଦିନ ହେଲାଣି ଜର ?

ପ୍ରାୟ ପାଞ୍ଚ ଦିନ ହେବ ।

ଜର ଓହ୍ଲାଉଚି ?

ନା—

ଖାଇବାକୁ କଣ ଦେଉଚ ?

ଗଉରୀ ଚୁପ୍ ରହି କାନ୍ଦିବାକୁ ଲାଗିଲା ।

ଟାଏଫଏଡ ଟେଣ୍ଡେନ୍ସି ରହିଛି—ଆସ ଆମ ଘରକୁ ଚାଲ ।

ଗଉରୀ ଆପତ୍ତି କରିବାକୁ ଯାଉଥିଲା କିନ୍ତୁ କାହ୍ନୁ କହିଲା, ସେ ମୋର ବନ୍ଧୁ ପତ୍ନୀ, ଆପତ୍ତି କଣ ?

ସନ୍ତୋଷ ବସିଥିଲା ଷ୍ଟଡି ରୁମ୍‌ରେ । ପଚାରିଲା, କାହାକୁ ଆଣିଚୁରେ ?

ଗଉରୀ ସୁମିତ୍ରା ପଛେ ପଛେ ଚାଲିଲା । ସୁମିତ୍ରା କୋଳରେ ଗଉରୀର ପୁଅ ହରି ।

କାହ୍ନୁ ଗୋଟାଏ କୁସନ ଉପରେ ବସୁ ବସୁ କହିଲା, ସେ ମୋର ଭଉଣୀ ।

ତୋର କେଉଁଦିନ ଏଡ଼େ ଭଉଣୀଟିଏ ହେଲାମ ?

ନିଜ ଭଉଣୀ ନୁହଁ···ବାସ୍ତବିକ ବଡ଼ ହତଭାଗୀ ସେ ।

ଜଣା ପଡ଼ୁଚି ତ ।

ହଁ ସ୍ୱାମୀ ମଲେ; ତା ପଛେ ପଛେ ଏ ବେମାର, କିଏ କରାଇବ କହିଲ ?

କଣ ହୋଇଚି ଯେ ଏତେ ବ୍ୟସ୍ତ ? ଭଲ ହୋଇ ଯିବ ଯେ ! ଆଚ୍ଛା ଆଜି କାହିଁକି ଆସିଲୁ ନାହିଁ, କଣ ପୁଅ ନେଇ ବ୍ୟସ୍ତ ଥିଲୁ ? ଭଉଣୀର ପୁଅ କିଏ, ଆଉ ନିଜର ପୁଅ କିଏ ? କଣ କହୁଥିଲି କି, ଗାନ୍ଧୀ ସ୍ମୃତି ପାଣ୍ଠିକୁ ଷାଠିଏ ହଜାର ଦେବାକୁ ହେବ । ପରେ ଚାଳିଶି ହଜାର । ଏତିକି ଦେଲେ ହୁଏତ ଲାଇସେନ୍ସ ମିଳିଯାଆନ୍ତା ଶୀଘ୍ର । କଣ କହୁଚୁ ? ତେବେ କାଲି ସକାଳୁ ଆସିବୁ, ନିଶ୍ଚୟ, କେତେ କାମ ଅଛି ।

କାହ୍ନୁ ସନ୍ତୋଷର ହାତ ଧରି ପକାଇ କହିଲା, ସବୁ କରିବି ଭାଇ, କିନ୍ତୁ ଏପୁଅକୁ କପରି ବଞ୍ଚାଅ ।

ସନ୍ତୋଷ ହସି ଉଠିଲା ଜୋରରେ । ବାସ୍ତବିକ ବଡ଼ ବ୍ୟସ୍ତ ହୋଇ ପଡ଼ିଚୁ ତ । କଣ ହୋଇଚି ଯେ ବଞ୍ଚିବ ନାହିଁ ?

* * * *

ଅନ୍ଧକାର । ଅସହ୍ୟ ଅନ୍ଧକାର । ଏ ଅନ୍ଧକାର ମଧ୍ୟରେ ପୃଥିବୀ ଆତ୍ମହତ୍ୟା କରିଚି ଯେପରି । ଆଉ ତାର ରକ୍ତ ଏଇ ଅନ୍ଧକାରର ସାଗରରେ ଲହରୀ ରୂପେ ଖେଳୁଚି । ସନ୍ତୋଷ ମନା

କରୁଥିଲା । ବହୁତ କାମ ଅଛି । ନା, ଦୁଇଦିନ ଛୁଟି ନେଇ ନ ଗଲେ ଆଉ କେଉଁଦିନ ଯିବ ? ବାପା କେତେ କରି ଲେଖିଛନ୍ତି । ଗଉରୀକୁ ଏଇ ଅବସ୍ଥାରେ ଛାଡ଼ିଦେଇ ଚାଲିଯିବା କଣ ଉଚିତ ହେବ ? କିଏ ବଡ଼ ? ଗଉରୀ ନା ବାପ ମା ? ଗରିବ ନିଃସହାୟ ଗଉରୀ, ଆଶ୍ରୟହୀନା ଅଭାଗିନୀ ଗଉରୀ ! ତାର ଆଉ କିଏ ଅଛି ? ତଥାପି ଯିବାକୁ ପଡ଼ିବ । ବାପା କେତେଥର ଲେଖିଲେଣି । ସବୁଦିନ ଝୁରୁଚ ଯିବା ପାଇଁ, ଆଜି ନ ଗଲେ ଆଉ କେଉଁଦିନ ଯିବ ? ସାନ ଭଉଣୀକୁ ଜର । ବୋଉକୁ ଆମାଶୟ । ନା, ଶେଷରେ ଯିବାକୁହିଁ ପଡ଼ିଲା ।

ଗଉରୀକୁ କିଛି ନାହିଁ ଆସିଲା ବେଳେ, ସୁମିତା ବି ଜାଣି ନାହିଁ । ସେମାନେ ଜାଣିଲେ କଣ ଭାବିବେ ? ସନ୍ତୋଷ ବୁଝାଇ ଦେବନି ଯେ ! ମୋଟେ ଦୁଇଦିନ ତ । ହରି ଯଦି ମରିଯାଏ ! ନା-ନା- ଭଗବାନ୍ ହରିକୁ ନିଅ ନାହିଁ । ଭଗବାନ—ବିପଦରେ ନାସ୍ତିକ ଡାକ ଶୁଣିବେ ଭଗବାନ ? ଭଲ କରି ଦେଲେ ଆଉ ଥରେ ଗାଳି ଶୁଣିବାକୁ ? ନା, ନା, ହରି, ଦୁଃଖ-ହର ମହାପ୍ରଭୁ, ହରିକୁ ବଞ୍ଚାଅ, ବଞ୍ଚାଅ, ଦୁଇଟି ଆଖିରେ ଆନନ୍ଦାଶ୍ରୁ ବୁହାଇବା ପାଇଁ; ଗୋଟିଏ ଅସହାୟ ନାରୀ ମନର ଏକମାତ୍ର ସାନ୍ତ୍ୱନା ପାଇଁ ।

ଭଗବାନ, ନିକଟରେ ଅଙ୍କଶାୟିନୀ ଲକ୍ଷ୍ମୀ, ଆଗରେ ପଶା-ପାଲି । ସେଇ ତିନୋଟି କାଠି ନିୟନ୍ତ୍ରଣ କରୁଚି ଏତେ ବଡ଼ ପୃଥିବୀର ଭାଗ୍ୟକୁ ! କେତେବେଳେ କାହାର ମୃତ୍ୟୁ, କାହାର ଜନ୍ମ, କାହାର ସୁଖ ପୁଣି ଦୁଃଖ ! ବିଚିତ୍ର ଏଇ ପଶାପାଲି, ଆଉ ଅଦ୍ଭୁତ ଏଇ ଭଗବାନ !

ଆକାଶର ମୁଖରେ ବୁଣି ପରି ପଶାପାଲିର ଘର ପରି ଫୁଟି ଉଠିଛନ୍ତି ଅସଂଖ୍ୟ ତାରାବୃନ୍ଦ । ଏଇ ସୁନୀଳ ଆକାଶର ଉପରେ

କେଉଁ ଦୂରରେ ଇନ୍ଦ୍ରଙ୍କର କଟକ ସ୍ୱର୍ଣ୍ଣର ସ୍ୱର୍ଗପୁରୀ । ପାରିଜାତ ଯେଉଁଠି ଫୁଟେ, ଅମୃତ ଯେଉଁଠି ଖାଦ୍ୟ ହୁଏ, ସେଠାରେ ପୁଣି ଏଇ ପଣାପାଲି ? ଆଜଯାଏ କଣ ସ୍ୱର୍ଗର ସ୍ୱର୍ଣ୍ଣଗଢ ପ୍ରାଚୀରରେ ଗଣତନ୍ତ୍ରର ଡାକ ବାଜ ନାହିଁ ? ହାତୀଦାନ୍ତର ସୌଖୀନ ମିନାର କଣ ଭାଙ୍ଗି ପଡ଼ନାହିଁ ତଳ ପୃଥିବୀର କରୁଣ ଅଥଚ ସ୍ପଷ୍ଟ ପ୍ରତିବାଦରେ ? କି ଅସଭ୍ୟ ସେ ସ୍ୱର୍ଗ, କି ମୂର୍ଖ ସେଠାର ଅଧିବାସୀଗଣ !

ଅପେକ୍ଷା, ଆଜି ଅପେକ୍ଷା ! କେତେଟା ବାଜିଲା ? ରାତି ଦୁଇଟା । ତଥାପି ଆଉ ଦୁଇଘଣ୍ଟା ଟ୍ରେନ୍ ଆସିବାକୁ । ଏଇ ସେଇ ଚପରାଶିଟା ଆସୁଛି । ବର୍ତ୍ତମାନ ହୁଏତ ମାଗିବ ଟିକେଟ ବାବୁ ! ତା ନହେଲେ ସେକେଣ୍ଡ୍‌କ୍ଲାସ ୱେଟିଂ ରୁମରୁ ବାହାର କରିଦେବ ।

ହେ, କପେ ଚା ।

ଚପରାଶିଟା ଚାଲିଗଲା । କିଛି ସମୟ ପରେ ସାହେବୀ କାଇଦାରେ ଆଣି ଦେଲା ଗୋଟାଏ ଟ୍ରେରେ ଚା । ଚା ପିଇ ସାରି ଚା କପ୍‌ଟା ଥୋଇ ଦେଲା ଟେବୁଲ ଉପରେ । ଆଠଣିଟାଏ ଫିଙ୍ଗି ଦେଲା ତଳକୁ । ଚପରାଶି ଆଠଣି ନେଇ ଚାଲିଗଲା ।

ଫ୍ୟାନ୍ ବୁଲୁଛି, କି ଗରମ୍ ! ଚେୟାରଟା ଛାରପୋକଙ୍କ ଆଶ୍ରୟ ସ୍ଥଳୀ ହୋଇ ଉଠିଛି । ଆଖି ଦୁଇଟା ନିଦରେ ବନ୍ଦ ହୋଇ ଆସୁଛି । ଗଉରୀ—ଗଉରୀକୁ ଛାଡ଼ି ଆସିବା କଣ ଉଚିତ ହେଲା ?

ଟଙ୍କା ନାହିଁ, ଆଠଣାଟା ଚା ଖିଆରେ ଗଲା । କଣ କରାଯିବ ବର୍ତ୍ତମାନ ? ସିଗାରେଟ୍, ଚା ଖାଇ ସାରିବା ପରେ ସିଗାରେଟ ଖଣ୍ଡେ ନିତାନ୍ତ ଦରକାର । ସନ୍ଧ୍ୟାକାଳେ ଯାହା ଗଟେ ଖାଇଥିଲି । ଭୋକ ହେଉଛି । ଚା'ଟା ପିଇ ସାରିବା ପରେ ଭୋକଟା ବଢ଼ିଗଲା ଯେପରି । ସୁମିତ୍ରା ସୁମିତ୍ରା, ଗଉରୀ ଗଉରୀ···କଣ କରୁଥିବ ବର୍ତ୍ତମାନ ? ହରି ଭଲ ହେବ ତ ? ରାମ ଓ ଶ୍ୟାମା ଭିତରେ ଯେତେ

ପ୍ରତ୍ୟେକର, କାହାର କାହା ଭିତରେ କେତେ ପ୍ରଭେଦ ? ଦଶ ଗୁଣନ ପାଞ୍ଚ ଗୁଣନ ଶହେ ଡେଡ଼ ଗୁଣନ ତେପନ, ବିଯୁକ୍ତ ପାଞ୍ଚ, ବିଭକ୍ତ ସାତ, କେତେ ହବ ?

ହଲୋ, ସାରେନ୍ ବାବୁ ଯେ, କେଉଁଆଡ଼େ ?

ଯାଉଛି ବ୍ରହ୍ମପୁର କାମ ଅଛି !

କଣ କରୁଛନ୍ତି ବର୍ତ୍ତମାନ ?

ତାଙ୍କୁ ଜାଣି ପାରୁନା ? ମିଲିଟାରୀ, ସୈନ୍ୟ ବିଭାଗ, ସିଗାରେଟ୍ ।

ଆପଣଙ୍କ ଗପଟା ବଡ଼ ସୁନ୍ଦର ହୋଇଥିଲା

ଗପ ତ ମୁଁ ଲେଖେନା !

ତେବେ କବିତାଟା ନିଶ୍ଚୟ !

ସାରେନ୍ ବାବୁ ହୋ ହୋ ହୋଇ ହସି ଉଠିଲେ, କବିତା ? କବିତା ହେଉଛି ମୋର ସିଗାରେଟ୍ ଆଉ ଡ୍ରିଙ୍କ୍ ।

ସାରେନ୍ ବାବୁ ମାର୍ଚ୍ଚ କଲା ପରି ଚାଲିଗଲେ । ପଛରୁ ଭାସି ଆସୁଛି ଦାମିକା ସିଗାରେଟ୍ର ଗନ୍ଧ । ଆଉ କେତେ ସମୟ ରହିଲା ଚାରିଟା ବାଜିବାକୁ ? ଆଖି ଦୁଇଟା ବନ୍ଦ ହୋଇ ଆସୁଛି । ଇଲେକ୍ଟ୍ରିକ୍ ଫ୍ୟାନ ଆଉ ଆଲୋକ, ସବୁ ମିଶି ଗୋଟିଏ ବିନ୍ଦୁ ହୋଇ ଯାଉଛି ଯେପରି ! ଭଗବାନଙ୍କର ଡିକ୍‌ଟେଟରୀ ଲୋପ କରିବାକୁ ସ୍ୱର୍ଗରେ କଣ ଗଣତନ୍ତ୍ର ହେବ ନାହିଁ ? ବିଚିତ୍ର ଏ ଡିକ୍‌ଟେଟରସିପ୍ ! ଆର ପାଖ ଖଟ ଉପରେ ଗୋଟାଏ ପୃଥୁଳକାୟ ମାରୁଆଡ଼ୀ ନିଦ୍ରା-ଭିଭୂତ ହୋଇଛି । ସେପଟ ଖଟ ଉପରେ ଦୁଇ ଜଣ ନିଦ୍ରା ଯାଉଛନ୍ତି । ଓଃ ! କି ଶକ୍ତି ଏ ନିଦର । ଡ଼ିକ୍‌ଟେଟରସିପ୍ ! ହେ ନିଦ୍ରା ଦେବତା ! ସାବଧାନ ! ପୃଥିବୀରେ ଡିକ୍‌ଟେଟରୀ ଶାସନକୁ ଆଉ ବରଦାସ୍ତ କରା ଯିବନି ।

× × ×

କୋଳାହଳରେ ନାଦ ଲାଗିଗଲା । ପ୍ଲାଟଫର୍ମ ଭର୍ତ୍ତି ହୋଇଯାଇଛି ।
ଟ୍ରେନ୍ ଗଭିର ଅନ୍ଧକାର ଭେଦ କରି ଆସୁଛି ।

ଟ୍ରେନ୍ ଛାଡ଼ିବାକୁ ଦୁଇ ମିନିଟ୍ ଅଛି । କାହ୍ନୁ ଚଢ଼ିଗଲା ଗୋଟାଏ କମ୍ପାର୍ଟମେଣ୍ଟକୁ । ଗୋଟାଏ ଲୋକ ଠେଲି ଦେଉଥିଲା । ପଡ଼ିଯାଇଥାନ୍ତା, ରକ୍ଷା ପାଇଗଲା । ଭିତରେ ଠିଆ ହେବାକୁ ବି ସ୍ଥାନ ନାହିଁ । ଅନ୍ଧାରରେ କିଛି ବାରି ହେଉନି । କାହ୍ନୁ ଭିତରକୁ ପଶିବାକୁ ଚେଷ୍ଟା କଲା । ଗୋଟିଏ ନାରୀ ଚିତ୍କାର କରି ଉଠିଲା । ତା ପଦତଳେ ହାତ ବାଜିଗଲା ବୋଧହୁଏ । କ୍ଷମା କରିବେ—ଅନ୍ଧାର ! ହଁ, ଅନ୍ଧକାରରେ ସବୁ କିଛି କ୍ଷମଣୀୟ ।

ଟ୍ରେନ୍ ଛାଡ଼ି ଦେଲା । ଟ୍ରେନର ଗୋଟାଏ ତୀବ୍ର ଚିତ୍କାର ଗଭିର ଗମ୍ଭୀର ବାୟୁମଣ୍ଡଳକୁ ଥରାଇ ଦେଲା ଯେପରି । କାହ୍ନୁ କମ୍ପାର୍ଟମେଣ୍ଟର କୋଣରେ ଆଉଜି ମୂର୍ତ୍ତିବତ୍ ଠିଆ ହୋଇ ରହିଲା ।

ଭାଇ ଗୋଟିଏ ଗପ କହ !

କି ଗପ କହିବି ?

କହନା ଗୋଟାଏ—

ମତେ ଗପ ଆସେନାରେ—

ହଉ ନ କହିଲେ ନାଇ । ନ'ବର୍ଷର ଭଉଣୀ ସୁରମା ଅଭିମାନ କଲା ।

କାହ୍ନୁ ପାଖକୁ ଉଡ଼ି ଆସି କହିଲା, ଶୁଣ ତେବେ, ଏଇ ଗୋଟିଏ ସୁନ୍ଦର ଗପ କହୁଛି ।

ସୁରମା ଆଗ୍ରହରେ ପାଖକୁ ଲାଗି ଆସି କହିଲା, କହ !

କି ଗପ କୁହାଯାଇ ପାରେ ନ'ବର୍ଷର ଝିଅକୁ ? ଚୀନ ଦେଶର କୁଏମିଙ୍ଗଟାଙ୍ଗ୍ ସରକାରର ପରାଜୟ ନା ବର୍ମାର କାରେନ ବିଦ୍ରୋହ ? ନା ଭାରତବର୍ଷର ଆଶ୍ରୟ ପ୍ରାର୍ଥୀଙ୍କ କଥା ?

ଶୁଣ, ସେ ଗୋଟାଏ ସମ୍ରାଟ···ନା, ନା, ହେଲାନି, ଥରେ ଗୋଟିଏ ଦେଶରେ ଜଣେ ରାଜା ଥିଲେ । ରାଜା କଥା ଗୁଡ଼ାକ ତ ନହାତି ପୁରୁଣା । ଥରେ ଗୋଟିଏ ଦେଶରେ ଜଣେ ମନ୍ତ୍ରୀ ଥିଲେ, ନା, ନା, ସଭାପତି ଥିଲେ—

ସୁରମା କହିଲା, କହିବ ଯଦି କହ, ନ ହେଲେ ମୁଁ ଯାଉଛି ।

କାହ୍ନୁ ଆରମ୍ଭ କଲା, ଗୋଟିଏ ଦେଶରେ ଜଣେ— ତାପରେ ? ରାଜା, ମନ୍ତ୍ରୀ ନା ସଭାପତି ? ନା ଡିକ୍‌ଟେଟର ? ନା, ନା, ଭୁଲ ହେଲା ।

ସୁରମା ଉଠି ଚାଲିଗଲା । ବାପା ଆସିଲେ । ଦେଖୁଥିଲେ ତ ଆମ ଅବସ୍ଥା । ତିନି ତିନୋଟି ଭଉଣୀ, ଚଳିବାକୁ ବାର ଜଣ । ଏ

ଏ ମହର୍ଘ ଯୁଗରେ ମୁଁ ଏକଦମ ଭାଙ୍ଗି ପଡ଼ିଲଣି । ତୋ ଉପରେ ତ ସବୁ ।

କାହ୍ନୁ ଯାଇ ବୋଉ ପାଖରେ ବସିଲା । ବୋଉ, ବୋଉମ ! ବୋଉ !

ଇଚ୍ଛା ହେଉଚି ପ୍ରାଣର ବୋଉର କୋଳରେ ଚିରଦିନ ପାଇଁ ମୁଣ୍ଡ ରଖି ଶୋଇ ଯିବାକୁ ! ଆହା କେଡେ ସ୍ନେହ ! କଙ୍କାଳସାର ବୋଉ, ଚିରା ଫଟା ଲୁଗା । ଘରେ କେତେ ଖଣ୍ଡ ଛିଣ୍ଡା କନ୍ଥା, ଗୋଟାଏ ଦଦରା ଖଟ, ଦୁଇଟା ଭଙ୍ଗା ଟ୍ରଙ୍କ । କାହିଁକି ଏ ବିକଟ ଦାରିଦ୍ର୍ୟ ? କାହିଁକି ଏ ଶୋଚନୀୟ ଅବସ୍ଥା ?

ସହରର ଅନ୍ତରାଳରେ ରହିଚି ଦାରିଦ୍ର୍ୟ, କିନ୍ତୁ ପଲ୍ଲୀର ଜଳବାୟୁରେ ଯେ ଦାରିଦ୍ର୍ୟ ପୂର୍ଣ୍ଣ ହୋଇ ରହିଚି ! ଐଶ୍ୱର୍ଯ୍ୟଶାଳୀ ସହରର ଦାରିଦ୍ର୍ୟ ଆଖି ଏଡ଼ାଇ ଯାଏ, କିନ୍ତୁ ପଲ୍ଲୀର ଅଣୁ ପରମାଣୁ ଭେଦ କରିଚି ଯେଉଁ ଦାରିଦ୍ର୍ୟ, ଅଭାବ, ଅନାଟନ, ତାକୁ ଦୃଷ୍ଟି-ପଥର ଅନ୍ତରାଳରେ ରଖି ହୁଏନା । କେଉଁଠିକୁ ଗଲେ ଏ ଦାରିଦ୍ର୍ୟରୁ ତ୍ରାହି ମିଳିବ ?

ସୁରମାକୁ ବୋଉ ଡାକିଲା, ସୁମା, ଧାନ କୁଟିବୁ, ଲୁ ଆ ।

କାହ୍ନୁ ପଚାରିଲା, ସେ କଣ କରିବ ?

ଶୁଖାଇ ଦେବ ।

ଛ'ବର୍ଷର ଝିଅ । ସୁରମା ନ କହି କେତେ ଖଣ୍ଡ ହାଡ଼ର ସମଷ୍ଟି ସୁରମା କହିଲେ ହୁଏତ ଠିକ୍ ହେବ । ରୋଗଶୀର୍ଣ୍ଣ ଶରୀରରେ ଦେହଶ୍ରୀ ଲୁଚି ଯାଇଚି, ହୁଏତ ଚିରଦିନ ପାଇଁ ।

ସୁରମା କହିଲା, ଭାଇ କାଲି ରଜ । ଏଇ ଡାକ୍ତର ବାବୁଙ୍କ ଝିଅର ଜାମା ଆସିଚି, କେତେ ପ୍ରକାର କାଚ ଆସିଚି, ଚଟି ଆସିଚି, ମୋ ପାଇଁ ଦୁଇ ପଟ କାଚ ଆଣିବନି ?



ବୋଉ ପାଣ୍ଟି କଲା—କାଡ, କାଡ କଣ ହେବ ? କେତେ କାଡ ଗୁଙ୍ଗି ଦେଲଣି, ଯୋଉ ତ ରଜ !

ସୁରମା ଅଭିମାନ ଓ ରାଗକୁ ଅନ୍ତରରେ ଲୁଚାଇ ଚାଲିଗଲା ।

ଡାକ୍ତରବାବୁ ସେଫ୍‌ଟି ରେଜରରେ ଖିଅର ହେଉଥିଲେ । ତାଙ୍କୁ ଯାଇ ନମସ୍କାର ହେଲା ।

କେଉଁଦିନ ଆସିଲେ ?

ଆଜ ସକାଳେ ତ ଆସିଚ ।

ତାପରେ, ବର୍ତ୍ତମାନ କଣ କରୁଛନ୍ତ ?

ଚାକରୀ କରୁଚ ।

କି ଚାକରୀ ?

ଜଣକର ପ୍ରାଇଭେଟ ସେକ୍ରେଟରୀ—

କଣ କରିବେ ଆଜ ? ସ୍ୱାସ୍ଥ୍ୟ ତ ଖରାପ !

ଡାକ୍ତର ବାବୁଙ୍କ ଝିଅ ଘର ଭିତରୁ ନାଚ ନାଚ ଆସିଲା, ବାପା, ମୋ ଇଂରେଜୀ ପଢା ଆଣି ଥିଲ ? କାଲି ଉଜ !

ଡାକ୍ତର ବାବୁ ସେଫ୍‌ଟି ରେଜରକୁ ରଖୁ ରଖୁ ଉତ୍ତର ଦେଲେ, ହାରଟା ତ ଆସିଚ, ଆଉ ଆଜ ଆଣିବା ।

ଡାକ୍ତର ବାବୁଙ୍କର ଝିଅ—ବେଶ୍ ହୃଷ୍ଟ ପୁଷ୍ଟ । ବୟସ ପ୍ରାୟ ଦଶ ହେବ । କିନ୍ତୁ ତରୁଣୀ ସୁଲଭ ଚପଳତା ଓ ସୁଷମା ତାର ଅଙ୍ଗରେ ଆତ୍ମପ୍ରକାଶ କରିଚ । ସୁନ୍ଦରୀ ନୁହେଁ ଅବଶ୍ୟ, ଅତରିକ୍ତ ଚର୍ବି ବହୁଳ ଶରୀର କପରି ଅସୁନ୍ଦର ଦେଖାଯାଉଚ ।

ଆଚ୍ଛା ମୁଁ ଆସୁଚ !

ବସନ୍ତୁନା, କ୍ୟାରମ ଖେଳବା ବାଡିଏ, ଘରେ କଣ କରିବେ ?

କାହ୍ନୁ କହିଲା, ନା ଥାଉ ପରେ ଆସିବ ।

ଆସୁ ଆସୁ ଦେଖା ହେଲା ବନ୍ଧୁ ରାମଚନ୍ଦ୍ର । ହାତ ଧରି ପକାଇ କହିଲା, କିରେ ବହୁତ ଦିନ ପରେ ତ ! ଆଜିକାଲି ଆଉ କଣ ହେଉଛି ?

ହଁ, ବହୁତ ଦିନ ପରେ ।

କଣ ହଉଛି ଆଜିକାଲି ?

ଏଇ ଗୃହକର୍ମ । ତୋର ?

ବ୍ୟବସାୟ, ଲୁଗା ଦୋକାନଟାଏ ଖୋଲିଛି ।

ଆଉ କଣ ପଚାରିବ କାହାକୁ ? କଣ ବା ଅଛି କହିବାକୁ ? ସମୟର ବ୍ୟବଧାନ ହରଣ କରିଛି ବନ୍ଧୁତ୍ୱର ଅନାବିଳ ସ୍ନେହ । ଦୁହିଁଙ୍କ କଥା ଭିତରେ, କଥାର ସାହା ସାର, ବନ୍ଧୁତ୍ୱର ସାହା ପ୍ରାଣ, ଆନ୍ତରିକତା ଦୁହେଁ ହରାଇ ବସିଥିଲେ ଯେପରି !

ହଠାତ୍ ରାମ କହିଲା, ଡାକ୍ତରଙ୍କ ଘରକୁ ନା କମ୍ପାଉଣ୍ଡର ଘରକୁ ଯାଇଥିଲୁ ? କମ୍ପାଉଣ୍ଡରଙ୍କ ଘରକୁ ଯାଇନାହୁଁ ?

ନା ।

କେତେବେଳୁ ଆସିଲୁଣି ?

ଏଇ ଆଜି ସକାଳେ ।

ଏତେ ସମୟ ହେଲା ଆସିଲୁଣି, ଅଥଚ ଯାଇ ପାରି ନାହୁଁ ?

ଯିବାର ଆବଶ୍ୟକତା ନ ଥିଲା ।

ରାମଚନ୍ଦ୍ର ହସି ଉଠିଲା, ସବୁଠାରେ କ'ଣ ଆବଶ୍ୟକତା ଥାଏ ? ଆବଶ୍ୟକତାକୁ ଜଗି ବସିଲେ ମଣିଷକୁ ମରିବାକୁ ପଡ଼ିବରେ ମରିବାକୁ ପଡ଼ିବ ।

କାହିଁକି ଯାଇଥାନ୍ତି ଶୁଣେ ?

ଆରେ ଦେଖିବୁ ମୈଥିଳୀକୁ ? କମ୍ପାଉଣ୍ଡର ବାବୁଙ୍କ ଝିଅ କେଡ଼େ ସୁନ୍ଦର !

ଝିଅ ଦେଖିବା ଛଡ଼ା ଦୁନିଆରେ ଯେମିତି ଆଉ କଛି କାମ ନାହିଁ !

ବୈରାଗ୍ୟ ଆସିଗଲାଣି ନା କଣ ? ବେଶୀ ମାଛ ଖାଇଲେ ବିରାଡ଼ିର ଯେଉଁ ଅବସ୍ଥା ହୋଇଥାଏ ।

କାହ୍ନୁ ଓଠରେ ମୃଦୁହସ ଖେଳାଇ କହିଲା, ଯଏ ବିରାଡ଼ି ନୁହେଁ ସେ ମାଛ ଖାଇବ ବା କାହିଁ କି ?

ଓଃ, ସମସ୍ତ ହୋଇଗଲାଣି ଯାଉଚି । ପରେ ଦେଖା ହେବ ।

ରାମଚନ୍ଦ୍ର ଚାଲିଗଲା ।

ରାମଚନ୍ଦ୍ର ଗୋଟିଏ ଆଖିରେ ମୈଥିଳୀ ଆଉ ଆର ଆଖିରେ ଐଶ୍ବର୍ଯ୍ୟ ଦେଖିବାକୁ ଆରମ୍ଭ କରଚି । ଆଜ ମୈଥିଳୀ, ମିଥିଳାର ରାଜକୁମାରୀ ସୁକୁମାରୀ ରାଜଦୁଲାଳୀର ଦୁଇ ଆଖିରେ ପୃଥିବୀର ଐଶ୍ବର୍ଯ୍ୟ, ଯୌବନର ବିଚିତ୍ର ରଙ୍ଗ ନା ହୃଦୟର ଶାନ୍ତମାଧବ ଭାବ, କୁମାରୀର କୌମାର୍ଯ୍ୟ ? ମୈଥିଳୀର ଆଖିରେ ମିଥିଳାର ଧ୍ବଂସାବଶେଷର କରୁଣ ଛବି । ମିଥିଳାର ସେଇ ଧ୍ବଂସାବଶେଷରେ ମରିଯାଇଚି ମୈଥିଳୀର ସମସ୍ତ ସୌନ୍ଦର୍ଯ୍ୟ ଓ ମହାନୁଭବତା । ରାମଚନ୍ଦ୍ରଙ୍କର ଆଦରଣୀୟା ଅଙ୍କଶାୟିନୀ, ଜୀବନସଙ୍ଗିନୀ ସତୀ ସାଧ୍ବୀ ପରମା ପତିବ୍ରତା ଯେଉଁ ମୈଥିଳୀ ଅଗ୍ନିର ଲେଲିହାନ ଶିଖାରେ ଜୀଳ ଦେଇଥିଲା କାମନା ଲିପ୍ତ ରାବଣକୁ, ସେଇ ମୈଥିଳୀ ଆଜ ଆଖିର କଟାକ୍ଷରେ ହୃଦୟରେ କାମନା ଜାତ କରାଉଚି । ଅନଙ୍ଗନା ମୈଥିଳୀ, ବରାଙ୍ଗନା ମୈଥିଳୀ ଆଜ ପରିଣତ ହୋଇ ଯାଇଛି ବାରାଙ୍ଗନା ମୈଥିଳୀରେ । ବଂଶ ଶତାବ୍ଦୀର ଜୁଲିଏଟ, ଓଠରେ ତାର ଉଜଳେ ରୋମିଓଙ୍କର ତୃପ୍ତି ପାଇଁ ହସ ! କି ସୁନ୍ଦର ପୁଣି କି କଦର୍ଯ୍ୟ !

ସୁରମା ଆସି ଡାକିଲା ଖାଇବା ପାଇଁ । ଭାତ, ଡାଲି, ଲଙ୍କାମରିଚ ।

ବାପା କହୁଥିଲେ, ଦେଖିଲୁଣି, ତୋ ଦେହରୁ ଖଣ୍ଡେ ଛିଣ୍ଡା ଅଣ୍ଟ ଲୁଚୁ ନ ଥିବା ଲୁଗା ପିନ୍ଧି ଏପଟ ସେପଟ ବୁଲି ବୁଲି କରୁଛ । ମାଷ୍ଟର, ପିଲେ ଆଉ ଡାକ୍ତରଖାନାର ଅନ୍ୟାନ୍ୟମାନେ କଣ ଭାବୁଥିବେ କହିଲୁ !

ବୋଉ କହି ଉଠିଲା, ଆଉ ଭଲ କଥା ଶୁଝାଇଲେ ଯେ । ବଜାର ଠାରୁ ଆରମ୍ଭ କରି ସ୍କୁଲ ଡାକ୍ତରଖାନା ହୋଇ ମଇଳା ମଳଦ୍ଧି ବୋଳା ଛିଣ୍ଡା ଲୁଗା କାମିଜ ପିନ୍ଧି ଯିବା ଆସିବା କରୁଛ !

କାହ୍ନୁ ଖାଇସାରି ଉଠିଆସିଲା ।

ବାବୁ ଡାକୁଛ ।

ମତେ ?

ହଁ ।

କେଉଁ ବାବୁ ?

ବାବୁ, ମୁଁ କମ୍ପାଉଣ୍ଡର ବାବୁଙ୍କ ପୁଅ ।

କମ୍ପାଉଣ୍ଡର ବାବୁଙ୍କ ଘର ଦୁଆର ମୁହଁରେ ଯାଇ କାହ୍ନୁ ଠିଆ ହେଲା ।

ମୈଥିଳୀ ଦୁଆର ବନ୍ଦ ପାଖକୁ ଆସି କହିଲା, ଆସନ୍ତୁନା ଘରକୁ ।

କାହ୍ନୁ ତାଙ୍କ ସଙ୍ଗେ ସଙ୍ଗେ ଘର ଭିତରକୁ ଗଲା । ଗୋଟାଏ ଚେୟାର ଉପରେ ବସିବାକୁ କହି ମୈଥିଳୀ ନିଜେ ବସିଲା ଆଉ ଗୋଟାଏ ଚେୟାର ଉପରେ ।

ଆପଣ ସକାଳୁ ଆସିଲେଣି, ଅଥଚ ଏଠିକି ଆସି ନ ଥିଲେ ! ଜାଣି ନ ଥିଲି ।

ମୁଁ ଶୁଣିଲି ଡାକ୍ତର ବାବୁଙ୍କ ଘରୁ ।

ହଁ ଯାଇଥିଲି ତାଙ୍କ ଘରକୁ ।

ମୁଁ ପଢୁଛି ଟେନ୍‌ଥ କ୍ଲାସରେ, ଏଇ ହାଇସ୍କୁଲରେ ।

ବେଶ୍ ତ !

ଆପଣ ଟିକିଏ ମତେ ମାଥେମେଟିକ୍‌ସ ପଢ଼ାଇ ଦଅନ୍ତେ !

ଦେବ ।

ଅଙ୍କ ଆଲଜେବ୍ରାରେ ମୁଁ ବଡ଼ ଦୁର୍ବଳ ।

ତମର୍ କିଏ ଏଇଠି ସାନ ଭାଇ ?

ହଁ ସେତିକି ତ, ବୋଉ ମଲାଣି ଦୁଇବର୍ଷ ହେଲା ।

ବାପା ?

ବାପା ଡାକ୍ତରଖାନାରେ ।

କାହ୍ନୁ ଅଙ୍କ ବୁଝାଇବାକୁ ବସିଲା । ବୁଝାଇ ସାରି ଖଣ୍ଡେ ଅଙ୍କ ଦେଲା କରିବାକୁ ।

ମୈଥିଳୀ । ଯୌବନର ସୁଷମା ଅଙ୍ଗେ ଅଙ୍ଗେ ଖେଳି ଉଠୁଛି । ଚିବୁକର ରକ୍ତିମ ଆଭା, ଢଳ ଢଳ ଆଖି, ଜ୍ୱଳନ୍ତ ଓଠ, କି ସୁନ୍ଦର ! ବେଣୀ ଦୁଇଟି ଲମ୍ବି ଆସିଛି ବର୍ତ୍ତୁଳ ନିତମ୍ବ ଉପରକୁ । ଏ ସ୍ୱର୍ଗୀୟ ସୁଷମାନେଙ୍କ ବ୍ୟଭିଚାର—ତମସାବୃତ ହେଲା କିପରି ?

ମୈଥିଳୀ ମୁଣ୍ଡ ଟେକି କହିଲା, ମୋ ନାଁଟା ତ ଜାଣିଲେ ନାହିଁ !

ଜାଣିବା ଦରକାର ନାହିଁ ।

ନା, ଶୁଣନ୍ତୁ ଆପଣ ହେଲେ ଗୁରୁ, ଛାତ୍ରୀ ମୁଁ । ଛାତ୍ରୀର ନାଁ ଜାଣିବା ଦରକାର, ମୋ ନାଁ ମୈଥିଳୀ, ଡାକ ନାଁ ମିଳି ।

ସୁନ୍ଦର ନାଁଟିଏ ତ !

ମୈଥିଳୀ ଖେଁ ଖେଁ ହୋଇ ହସି ଉଠିଲା, ବାପ୍ପା ଦୁର୍ବଳ ଆପଣ ।

ମୁଁ ?

ହଁ, ବଡ଼ ଦୁର୍ବଳ, ଭାବିଥିଲି ଆପଣ ଦୁର୍ବଳ ହୁଅନ୍ତି ବୋଲି ।

କିପରି ଜାଣିଲ ?

ଏଇ—

ଏଇ ?

ମାନେ, ଉଦାହରଣ ସ୍ୱରୂପ ସୁନ୍ଦରୀ ନାଟିଏ ତ, ଆପଣଙ୍କୁ ମୋର ସୌନ୍ଦର୍ଯ୍ୟ ମୁଗ୍ଧ କରୁଚି ନିଶ୍ଚୟ । ବଡ଼ ବିପଦଜନକ ଏଇ ଯୌବନ ! ଏ ଯୌବନକୁ ଯଦି ମାରି ଦିଆଯାଇ ପାରନ୍ତା ! ଏତେ ଲୋକ ଅଥଚ ଜଣକୁ ହେଲେ ସବଳ ଦେଖିଲି ନାହିଁ ।

କାହ୍ନୁ, ଆଶ୍ଚର୍ଯ୍ୟ ହୋଇ ରହିଁ ରହିଲି ମିନ ଆଜ୍ଞେ, ଦେହରେ ତାର ଅପୂରନ୍ତ ଯୌବନ, ଅଥଚ ମୁହଁରେ ତାର ଦୁଃଖ କାର୍ଯ୍ୟ ବାଧା !. ବାସ୍ତବିକ କି ଛଳନାମୟୀ ଏ ନାରୀ ! ନା, ନା, କି ସୁନ୍ଦର ଏଇ ନାରୀ । ବାହାରର ସୌନ୍ଦର୍ଯ୍ୟ ପରି ଅନ୍ତରରେ ରହିଚି ତାର ସୌନ୍ଦର୍ଯ୍ୟ । ଏ ସୌନ୍ଦର୍ଯ୍ୟର ଜୟ ହେଉ ।

ମୁଁ ଆସେ ତେବେ ।

ରାଗିଲେ କି ?

ରାଗିବାର କାରଣ ନାହିଁ ଯେ ।

ନା, ରାଗିଚନ୍ତି । ମୋର ଏଇଟା ବଡ଼ ଦୋଷ, ସମସ୍ତଙ୍କୁ ମୁଁ ଯାହା ଲାଗେ ତାହା ହଠାତ୍ ପ୍ରକାଶ କରିଦିଏ । କିନ୍ତୁ ସତ କହନ୍ତୁ ତ କି ଦୁର୍ବଳ ହୋଇ ଯାଉଛି ଏ ପୁରୁଷ ଜାତିଟା ! ଯେଉଁଠି ଗୋଟିଏ ସ୍ତ୍ରୀ ଦେଖିଲେ, ସଙ୍ଗେ ସଙ୍ଗେ ତା ସମ୍ପର୍କରେ କଥାବାର୍ତ୍ତା, ସେମିତି ଏ ପୃଥିବୀରେ ନାରୀ କେବଳ ଶଯ୍ୟାସଙ୍ଗିନୀ ଛଡ଼ା ଆଉ କିଛି ହେବାର ଯୋଗ୍ୟ ନୁହେଁ ।

ଠିକ୍ କହୁଚ ମିନ, ବଡ଼ ଦୁର୍ବଳ ଏ ପୁରୁଷ ଜାତି । ନାରୀର ଏ ସୌନ୍ଦର୍ଯ୍ୟ ଭିତରେ ସେ ଆତ୍ମହତ୍ୟା କରି ମରିଚ ! ତାକୁ ତମେ ରକ୍ଷା କର ମିନ, ରକ୍ଷା କର । ତମର ସେ ଶକ୍ତି ହେଉ ।

କାହ୍ନୁ ଚାଲି ଆସିଲା । ମିନ ପଛରୁ ନମସ୍କାର ହେଉଥିଲା ।

×          ×          ×          ×

ସନ୍ଧ୍ୟା ହୋଇ ଯାଇଚି । କାହ୍ନୁ ଭଲି ଖେଳ ସାରି ଘରକୁ ଯାଉଥିଲା । ସ୍କୁଲର ମାଷ୍ଟର ଅରବିନ୍ଦଙ୍କ ସଙ୍ଗେ ଦେଖା ହେଲା । ଅରବିନ୍ଦ ବାବୁ କହିଲେ, ଶୁଣିଲେଣି, କି ଲଜ୍ୟା କଥା ଆପଣଙ୍କୁ ଆଉ କଣ କହିବି ?

କାହ୍ନୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା, କଣ କହିଲେ ?

ଶୁଣିଲୁ ଆପଣଙ୍କ ବୋଉ ଯାଇ ଆମ ଘରୁ ଆଳୁ ଚୋରି କରୁଥିଲେ ।

କାହ୍ନୁ ବିରକ୍ତ ହୋଇ ଉତ୍ତର ଦେଲା; ମିଥ୍ୟାବାଦୀ !

ମିଛ କହୁନି, ଆଖିରେ ଦେଖିଚି, ନ ହେଲେ ମୁଁ କି ଅବିଶ୍ୱାସ କରିଥାନ୍ତି । ମୋ ସ୍ତ୍ରୀ ହାଣ୍ଡିଶାଳରେ ହାଣ୍ଡି ଧୋଉଛନ୍ତି । ମୁଁ ଖାଡ଼ା ଯାଇଥିଲି । ଆସି ଘର ଭିତରକୁ ଟର୍ଚ୍ଚ ମାରି ପଶିଗଲା ବେଳକୁ ଆପଣଙ୍କ ବୋଉ ଅଣ୍ଟିରେ ଆଳୁ । ଅଣ୍ଟିରୁ ଆଳୁ ଖସି ପଡ଼ିଲା । ବୋଉ, ଆପଣଙ୍କର ଚାଲିଗଲେ । ସ୍ତ୍ରୀଙ୍କୁ ଏ କଥା କହିନାହିଁ—ନହେଲେ କଣ ସେ ହୋଇଥାନ୍ତା !

କାହ୍ନୁ ଘରକୁ ଆସି ଡାକିଲା, ବୋଉ ବୋଉ !

ଯାଉଚି, ସଞ୍ଜ ଦେଉଚି ପରା !

କାହ୍ନୁ ବୋଉ ପାଖକୁ ଯାଇ କହିଲା, ଏ ସଞ୍ଜ ଦଉଚ କାହିଁକି ?

ତମର ପାଇଁରେ ତମର ପାଇଁ ।

କାହ୍ନୁ ରାଗରେ ସଞ୍ଜତକ ଗୋଟାଇ ଦୁଆରକୁ ଫିଙ୍ଗି ଦେଲା । ଏ ସଞ୍ଜ ଦେବା ଦରକାର ନାହିଁ ।

ଫୋପାଡ଼ି ଦେଲୁ ?

ଚୋରର ପୂଜା ଭଗବାନ ଗ୍ରହଣ କରନ୍ତି ନାହିଁ !

ଚୋରୀ ?

ହଁ ବୋଉ, ତୁ କଣ ଆମକୁ ଦାଣ୍ଡରେ ଚଲାଇ ଦେବୁ ନାହିଁ ?

କଣ ହେଲା କ ?

କଣ ହେଲା କ ? ତୁ ଅରବିନ୍ଦ ବାବୁଙ୍କ ଘରୁ ଆଜି ଚୋରୀ କରିଥିଲୁ ?

କିଏ କହିଲା ?

ଅରବିନ୍ଦ ବାବୁ କହିଲେ । ବୋଉ ତା ଅପେକ୍ଷା ଆମକୁ ମାରି ଦେଇ ଚୋରୀ କରୁନୁ ? କାହ୍ନୁର ସର୍ବାଙ୍ଗ ରାଗରେ ଥରୁଥିଲା । ସେ ସେଠାରେ ବସି ପଡ଼ିଲା ।

ଗୋଟିଏ ଦୀର୍ଘଶ୍ୱାସ ଛାଡ଼ି ବୋଉ କହିଲା, ତୋର ପାଇଁରେ । ସକାଳେ ଖାଇଲୁନ । ତରକାରୀ କିଛି ନ ଥିଲା, ଖାଲି ଭାତ କଣ ମଣିଷ ଖାଏ ? ଯେଉଁ ଜୀବନ ଯାଉ ସେ ପିନା ଚାଳ ପାରିବ ଭାତ ଲୁଣ ଖାଇ, କିନ୍ତୁ···ଛାଡ଼ି, ସେଥିପାଇଁ ଦଇଟା ଆଳୁ ଆଣିଥିଲି !

ଏଇ ସମୟରେ ସୁରମା ଆସିଲା । ଗୋଡ଼ରେ ଦୁଇଟା ଚପଲ । କାହ୍ନୁ ପଚାରିଲା, କଲେ କୋଉଠୁ ଆଣିଲୁ ?

ସୁରମା କହିଲା, ମୋ ଇଚ୍ଛା ହେଲା ଯେଉଁଠୁ ଆଣିଲି ! ତମର କଣ ଗଲା ? ତମେ ଦେଇଥିଲ କ ?

କାହ୍ନୁ କହିଲା, ଏଁ ଝିଅ ତ ସାହସ ହୋଇଗଲାଣି ଦେଖୁଛ । କୋଉଠୁ ଆଣିଲୁ ପଚାରୁଛି, ଉତ୍ତର ଦେଉଛି କେମିତି ! ଡାକ୍ତରଙ୍କ ଘରୁ ଚୋରୀ କରି ଆଣିଲୁ ନା କଣ ?

ସୁରମା ଚୁପ୍ ରହିଲା ।

କାହ୍ନୁ ତା କାନ ଧରି ପଚାରିଲା, କହ, କହ, ମୋ ସଙ୍ଗେ କରି ଅଛୁ ?

ସୁରମା ତଥାପି ଚୁପ୍ ରହିଲା । କାହ୍ନୁ ଜୋରରେ ଠେଲିଦେଲା ତାକୁ । ତଳେ ପଡ଼ିଯାଇ ଆଣ୍ଠୁ ଛିଣ୍ଡିଗଲା ସୁରମାର । ସୁରମା କାନ୍ଦିବାକୁ ଲାଗିଲା ।

ଭଗବାନ ଆସୁ ଚକ୍ରର ଘରେ ଜନ୍ମ ଦେଲେ । କାହ୍ନୁ ତକିଆ ସପଟାଏ ଧରି ଯିବାକୁ ବସିଲା ।

ବୋଉ ପଚାରିଲା, କୁଆଡ଼େ ଯାଉଚୁ ?

ଶୋଇବାକୁ ।

କେଉଁଠିକି ?

ସ୍କୁଲ ଘରକୁ ।

ଖାଇଲା ବେଳକୁ ଆସିବୁ ।

ଆସି ପାରିବ ନାହିଁ ।

ମୋ ସୁନାଟି ପରା ଆସିବୁ, ଗଣ୍ଡେ ଖାଇଦେଇ ଯିବୁ ।

ଏ ଚୋରର ଘରେ ମୁଁ ପାଣି ସୁଦ୍ଧା ଛୁଇଁବି ନାହିଁ ।

ତୁ ତ ଚୋରର ଝିଅ, ମୁଁ ସିନା ଚୋରଣୀ—

କାହ୍ନୁ ସପ ତକିଆ ଧରି ବାହାରିଗଲା । ପଛରୁ ବୋଉ ଡାକୁଚି, କାହ୍ନୁ କାହ୍ନୁ—

କାହ୍ନୁ ଆସି ସ୍କୁଲର ବାରଣ୍ଡାରେ ସପ ପକାଇ ଶୋଇଲା । କାମିନୀ ଫୁଲର ଗନ୍ଧ ଚତୁର୍ଦ୍ଦିଗରେ ଖେଳି ବୁଲୁଚି । ଚନ୍ଦ୍ର ତଳେ ଦେଇ ଭାସି ଯାଉଚି ଖଣ୍ଡ ଖଣ୍ଡ ଧଳା ମେଘ । ମୃଦୁ ପବନ ବେଶ ଥଣ୍ଡା ଲାଗୁଚି । ଚତୁର୍ଦ୍ଦିଗ ନୀରବ ଓ ଶାନ୍ତ । ସ୍କୁଲ ଛୁଟି ହୋଇଚି ଗ୍ରୀଷ୍ମ ଦିନ ପାଇଁ । ତେଣୁ ହଷ୍ଟେଲ ଶୂନ୍ୟ । ଏଇ ପାଖ ରୁମ୍‌ରେ

କୁଆଡ଼େ ପ୍ରେତ ଅଛି ! ଭାରି ବଦମାସ । ମଣିଷ ମଲେ ପ୍ରେତ ହୁଏ । ତାର ଅଶରୀରୀ ଆତ୍ମା ସାଂସାରିକ ଅତୃପ୍ତିର ତୃପ୍ତି ପାଇଁ ଏ ସଂସାରକୁ ପୁଣି ଫେରି ଆସେ । ବଞ୍ଚିଥିଲା ବେଳେ ତାର କାମନା ପୂର୍ଣ୍ଣ ହୁଏ ନାହିଁ, ଆଉ ମୃତ୍ୟୁ ପରେ ସେ କଣ ପୂର୍ଣ୍ଣ ହୁଏ ? କାମିନୀ ଫୁଲର ଗନ୍ଧ ମନୋରଞ୍ଜନ କରେ । ଆକାଶରେ ବଉଦର—ନା କାହାକର ଭେଳା ? ପ୍ରକୃତି ଜୀବନକୁ ସୁନ୍ଦର କରିବା ପାଇଁ କେତେ ଉପାଦାନ ଦେଉଛି । କିନ୍ତୁ ମଣିଷର ଜୀବନ, ପୃଥିବୀର ଶ୍ରେଷ୍ଠ ପ୍ରାଣୀର ଜୀବନ କଣ ସୁନ୍ଦର ହୋଇ ପାରୁଛି ? ଜୀବନର ମୁଖର କଳରବକୁ ହତ୍ୟା କରୁଛି କିଏ ?

ଆଗରେ ଡାକ୍ତରଖାନା । ଗୋଟାଏ ରୋଗୀ ଚିତ୍କାର କରୁଛି ଯନ୍ତ୍ରଣାରେ । ଡାକ୍ତରଖାନାର ପ୍ରତି ଅଂଶକୁ ଦେଖି ରହିଛି ଯେପରି ମୃତ୍ୟୁ, ମୃତ୍ୟୁର ଆଦେଶ ପତ୍ର । ମଣିଷର ତା ବିରୁଦ୍ଧରେ ସତ୍ୟାଗ୍ରହ ନା, ନା, ସଂଗ୍ରାମ, କିଏ ଜୟ ଲାଭ କରୁଛି ? ମଣିଷ ନା ମୃତ୍ୟୁ ? ମନୁଷ୍ୟର ସଯତ୍ନ ପ୍ରହରା, ମନୁଷ୍ୟର ଅକ୍ଳାନ୍ତ ପରିଶ୍ରମ କଣ ବଞ୍ଚାଇ ପାରୁଛି ମଣିଷକୁ ?

ଆକାଶରେ ଜ୍ୟୋତ୍ସ୍ନାର ବନ୍ୟା । ସେ ବନ୍ୟାର ପ୍ରଖର ସ୍ରୋତରେ ମେଘ ମାଳା ଭାସି ଯାଉଛି ଯେପରି । ଯେଉଁ ଦିନ ଏଇ ଦୁଃଖର ପୃଥିବୀ ଛାଡ଼ି ଆକାଶର ଏଇ ସୁନ୍ଦର ପ୍ରାନ୍ତରେ ମଣିଷ ଚାଲିଯିବ ସ୍ୱର୍ଗକୁ ସେ ଦିନ କି ଆନନ୍ଦ ନ ଲାଗିବ ସତେ ! ପୃଥିବୀରେ ଜୀବନ ନାହିଁ । ଜୀବନର ମାନେ ଯେଉଁଠି ଜୀବନ ନୁହେଁ, ବଞ୍ଚିବାର ଅର୍ଥ ଯେଉଁଠି ବଞ୍ଚିବା ନୁହେଁ, ସେଠାରେ ରହିବାର କି ଆନନ୍ଦ ମିଳିବ ? ତାଠାରୁ ବରଂ ମୃତ୍ୟୁ ଭଲ ।

ସେ ଧଳା ମେଘଟା କେତେ ଦୂରକୁ ଚାଲିଗଲାଣି । ଆଉ ଗୋଟାଏ ଚନ୍ଦ୍ରକୁ ଅତିକ୍ରମ କରି ଚାଲୁଛି । ସତିତ ତ ! କେତେ ଶୀଘ୍ର

ଅତିକ୍ରମ କରି ଚାଲିଗଲା ! ମଣିଷ ଜୀବନର ସ୍ରୋତ ସେହିପରି ପ୍ରଖର ବେଗରେ ହୁଏତ ଚାଲିଛି । ବାସ୍ତବିକ କେତେ ଶୀଘ୍ର ବାଇଶ ବର୍ଷ ଚାଲିଗଲା ? କିନ୍ତୁ ଏଇ ଦୀର୍ଘ ସମୟକୁ ଜୀବନ ଦେଇଛି କିଏ ? ଆଜି ଏ ଜୀବନକୁ ଦୀର୍ଘ ସମୟ ବା କିଏ ଦେଇଛି ? ଯେତେ ଦ୍ରୁତଗତିରେ ଯୌବନ ଆସିଛି ସେତେ ଦ୍ରୁତ ଗତିରେ ସେ ବି ଚାଲିଯିବ । ଏ ଯୌବନ ବା କିଏ ଦେବ କାହାକୁ ?

ଗଉରୀ ପୁଅ ଭଲ ହୋଇଯିବଣି । ନା, ହୁଏତ ମରିଯିବଣି । ଛି ଛି କି ଅମଙ୍ଗଳ କଥା । ଭଗବାନ ! ଗଉରୀର ପୁଅକୁ ଭଲ କରି ଦିଅ । ସେ ଦୀର୍ଘଜୀବୀ ହେଉ । ଦୀର୍ଘଜୀବୀ ହେଉ ! ସତେ ଯେମିତି ଦୁର୍ବାସା ବା କୌଣସି ସିଦ୍ଧ ତପସ୍ୱୀ, କହିଦେବା ସଙ୍ଗେ ସଙ୍ଗେ ଦୀର୍ଘ-ଜୀବୀ ହୋଇଯିବ !

ସାନ ଭାଇର ଜାତକ ଦେଖି ଜ୍ୟୋତିଷ କିଏ କହିଥିଲା ? କହିଥିଲା ଜାତକର ଦୀର୍ଘ ପରମାୟୁ । ପରମାୟୁ ଏକ ଶହ ଆଠ ବର୍ଷ । କିନ୍ତୁ ଚାରିବର୍ଷ ନ ପୂରୁଣୁ ଜାତକ ଦୀର୍ଘ ପରମାୟୁ ଲାଭ କଲା । ଶ୍ମଶାନର ମାଟିରେ ଆଜ ଜାତକ ଦୀର୍ଘ ଜୀବନ ଲାଭ କରିଛି । ଭଣ୍ଡ ତପସ୍ୱୀ ଗଣ ! ଏ ଭଣ୍ଡାମୀର ଶେଷ କେଉଁଠି ?

ଅରବିନ୍ଦ ବାବୁ ଦେଖିଚନ୍ତି । କିଣ ଭାବିଥିଲେ ସେ ? ସାମାନ୍ୟ ଆମ୍ବ କେତେଟା ପାଇଁ ସମ୍ମାନ ନଷ୍ଟ । ଅସହ୍ୟ । ବୋଉ, ସ୍ନେହ-ଶୀଳା ବୋଉ, ଏ ଦେହର ରକ୍ତ ମାଂସରେ ଯାହାର ରକ୍ତ ମାଂସ ମିଶିଛି, ସେ ପୁଣି ଅନ୍ୟାୟ କଲା କିପରି ? ଦେହର ରକ୍ତ ମାଂସ ଦେଇ ପୁଷ୍ଟି କରିଛି ଯାହାକୁ, ତାର କ୍ଷୁଧା ନିବାରଣ ପାଇଁ ଯଦି ତାର ମାଂସ ଦରକାର ହୁଏ ସେ ତ ଦେବାକୁ ପ୍ରସ୍ତୁତ ଅଛି; ସେ କାହିଁକି ଏପରି କଲା ?

ମୈଥିଳୀ ଗାଉଛି—

ହେ ସୁନ୍ଦର, ହେ ବରଣୀୟ, ହେ କମନୀୟ, ତୁମେ ଆସ ଆସ । ଆଜି କଳଙ୍କରେ ଏ ସାରା ଦେହ ବିଷାକ୍ତ ହୋଇ ଉଠିଛି । ମନ ପ୍ରାଣ ବିଷାକ୍ତ ହୋଇ ଯାଇଛି । କାମନାର ଦଂଶନରେ ମୁଁ ଧ୍ୱଂସ ହେବାକୁ ଯାଉଛି । ପାପ ଅନ୍ୟାୟର କାଳିମାରେ ମୁଁ କଳଙ୍କିତ ହୋଇଛି । ମତେ ରକ୍ଷାକର । ମତେ ନିର୍ମଳ କର ସୁନ୍ଦର କର ତୁମର କମନୀୟ ମଧୁର ସ୍ପର୍ଶରେ । ହେ ଦେବତା, ହେ ନିର୍ମଳତର, ହେ ସୁନ୍ଦରତର, ହେ କମନୀୟ, ତୁମେ ଆସ ଆସ ।

ଦେହରେ କାହାର ଏ ଦଂଶନ ? ଏ ଦାହରୁ ରକ୍ଷା କରିବ କିଏ ? ସେଇ ସୁନ୍ଦରତର ନିର୍ମଳତର ଭଗବାନ ? ଭଗବାନ ! ହାଃ–ହାଃ–ହାଃ ଭଗବାନ !

ମୈଥିଳୀର ସଙ୍ଗୀତ ଶେଷ ହୋଇଗଲାଣି । ତଥାପି ତାର ଶେଷ ମୂର୍ଚ୍ଛନା ପବନରେ ଖେଳି ବୁଲୁଛି ଯେପରି—ହେ ସୁନ୍ଦର, ହେ ନିର୍ମଳ, ସୁନ୍ଦର କର ତୁମର ସୁନ୍ଦର ନିର୍ମଳ କରରେ । ସେଇ ଭଗବାନ କାହାନ୍ତି ? ଐଶ୍ୱର୍ଯ୍ୟର ବିରାଟ ସ୍ତୁପ ତାଙ୍କୁ ହତ୍ୟା କରିଛି । ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟର ଲୋଭ ତାଙ୍କୁ ମାରି ଦେଇଛି । ସୁମିତ୍ରା ଲେଖିଥିଲା, ହେ ନିଷ୍ଠୁର, ହେ ନିର୍ମମ, ଆସ ଆସ । ଅନ୍ତରର ପୂଜା ବେଦୀରେ ଯେଉଁ ଦେବତାର ଅଭିଷେକ, ଅଶ୍ରୁର ସଜଳ ଅର୍ଘ୍ୟରେ ଯାହାର ବନ୍ଦନା, ସେ ଦେବତାର ମୃତ୍ୟୁ ନାହିଁ । କିନ୍ତୁ ଏଇ ଯେଉଁ ଭଗବାନ, ଲାଞ୍ଚ ନେବା ଯାହାର ଧର୍ମ, ଐଶ୍ୱର୍ଯ୍ୟ ଉପରେ ଯାହାର ଆଖି ତାର ମୃତ୍ୟୁ ହୋଇଛି । ସେ ପୁଣି ଜନ୍ମ ନେଇଛି ଧନୀକର ପ୍ରାସାଦରେ ଧନ ଲୋଭରେ ।

ବେଶ୍ ଭଲ ଲାଗୁଛି । ଏପରି ପରିବେଷ୍ଟନୀରେ କବିତା ଲେଖି ବାକୁ ଇଚ୍ଛା ହେଉଛି । କିନ୍ତୁ କି କବିତା ଲେଖିବ ସେ ? ଅଜ୍ଞାତର

ପ୍ରେମିକା ବିଷୟରେ ? ଲେଖିବ—ଆକାଶରେ ନିଃସଙ୍ଗ ଚନ୍ଦ୍ର, ବାୟୁରେ କାମିନୀ ଫୁଲର ମନହରା ଗନ୍ଧ, ମୃଦୁ ମଳୟ ଆଉ ଜ୍ୟୋସ୍ନା ପୁଲକିତ ରଜନୀ । ହେ ସାଥୀ, ହେ ପ୍ରିୟା, ହେ ବନ୍ଦନୀୟା ହେ ସୁନ୍ଦରୀ, ଯେନେ ସିନା ତମର ମୃତ୍ୟୁ ହୋଇଥିଲା ରଜନୀର ବିକ୍ଷିପ୍ତ ଅନ୍ଧକାରରେ, ଆଜି କିନ୍ତୁ ଜନ୍ମ ନେବ ତମେ ରଜନୀର ଏଇ ଶୁଭ୍ର ଅଙ୍କରେ । ସ୍ୱାଧୀନତାର ପକ୍ଷ ତମର ସିନା ଭାଙ୍ଗି ପଡ଼ିଥିଲା ସେ ଦିନ ସମାଜର କ୍ରୂର ଶାସନ ମଧ୍ୟରେ, ପ୍ରକୃତିର ଏଇ ମୁକ୍ତ ପ୍ରାଙ୍ଗଣରେ ତମର ସ୍ୱାଧୀନତା ପୁଣି ଫେରି ଆସିବ । ବାସ୍ତବରେ ନହୋଇପାରେ ସ୍ୱପ୍ନରେ ନହୋଇପାରେ, କିନ୍ତୁ କଳ୍ପନାରେ । କଳ୍ପନାର ସୁନେଲି ପକ୍ଷ ତମକୁ ମୁକ୍ତି ଦେବ । ପାଦରୁ ଛିନ୍ନ କରିବ ଶତ ଶତ ବର୍ଷର ବନ୍ଧନର ଶୃଙ୍ଖଳ । ତାପରେ ତମେ ଆସିବ, ଆସିବ କାମିନୀ ଫୁଲର ଏଇ ମନ ମତାଣିଆ ଗନ୍ଧରେ, ଏଇ ରଜତ ରଜନୀର ବେଣୀରେ, ପ୍ରକୃତିର କମନୀୟ ରୂପରେ । ଏ ଜ୍ୟୋସ୍ନା ତମର ମାଳିନ୍ୟ ଦୂର କରିବ, ଏ ଚନ୍ଦ୍ର ତମର କଳଙ୍କ ଅପହରଣ କରିବ, ଏ କାମିନୀ ଫୁଲ ଦେବ ତମକୁ ଶୁଭ୍ରତା, ଶ୍ଲୀଳତା, କମନୀୟତା ! ହେ ପଦ୍ମିନ ! ତମର ଛଦ୍ମ ବେଶ ତ୍ୟାଗ କର । ସଂଜୀବନୀ ସୁରା ପିଇ ଜାଗି ଉଠ । ଜାଗ, ଜାଗ !

କାହ୍ନୁ ବାବୁ, କାହ୍ନୁ ବାବୁ···

କିଏ ?

ମୁଁ ।

କିଏ ମିନ ? ଏତେ ରାତିରେ ?

ଭୟ ନାହିଁ ମୋ ପାଇଁ ।

କାହିଁକି ଆସିଲ ?

ଆପଣ ସୁରମାକୁ ମାରିଥିଲେ ?

କଣ ହେଲା ?

କାହିଁକି ?

ତମର ଦରକାର କଣ ?

କୁହ କାହିଁକି ମାରିଥିଲେ ?

କାହ୍ନୁ ବନ୍ଧଣାରୁ ଉଠି ବସିଲା । ବେଶ୍ ହେଲା, ମୋ ଭଉଣୀକୁ ମୁଁ ମାରିଲି, ଠିକ୍ କରିଛି ।

ଆପଣ ଅନ୍ୟାୟ ଭାବରେ ମାରିଛନ୍ତି !

ସତେ ନା କଣ !

ନିଶ୍ଚୟ, ଅନ୍ୟାୟ ।

କାରଣ ?

କାରଣ ସେ ଚପଲ ହଳକ ମୁଁ ତାକୁ ଦେଇଥିଲି ।

ମୁଁ ବା ଜାଣିବି କିପରି ?

ଜାଣିବେ ନାହିଁ, ଆଉ ଦୋଷ ଦେବେ । ଭାରି ତ ବଡ଼ଲୋକ ଆପଣ ! ଯିଏ ଦେଇ ପାରେ ନାହିଁ, ଅଥଚ ଅନ୍ୟର ଦାନକୁ ହିଂସା କରେ, ସେ ମନୁଷ୍ୟ ନୁହେଁ । ଆପଣ ଭାଇ, କିନ୍ତୁ ଭଉଣୀ ପାଇଁ କଣ ଆଣିଛନ୍ତି ଆଜିକୁ ? କଣ ବା ତାକୁ ଦେଇଛନ୍ତି ଆଜି-ଯାଏ ? କିନ୍ତୁ ଯେତେବେଳେ ଦେଇ ନାହାନ୍ତି ସେତେବେଳେ ମାରିବାକୁ ଆପଣଙ୍କୁ ଅଧିକାର ଦେଲା କିଏ ? ସାବଧାନ ! ଅନ୍ୟାୟ ଭାବରେ ଅଧିକାର ଜାହିର କରିବାର ଫଳ ଆପଣ ଦିନେ ନା ଦିନେ ପାଇବେ ।

ମୈଥିଳୀ ଚୁଲିଗଲା । କାହ୍ନୁ ଡାକିଲା, ମିଳି ମିଳି ଶୁଣ ।

ତଥାପି ମୈଥିଳୀ ଚୁଲିଗଲା । ଚନ୍ଦ୍ର କିରଣରେ ତାର ସିଲ୍-ହୋଏଟ୍ ଦେଖାଯାଉଛି । ପୃଥିବୀ ଆଜି ନାରୀ ରୂପ ନେଇଛି ଯେପରି,

ଅନ୍ୟାୟ ବିରୁଦ୍ଧରେ, ଅନାଚାର ବିରୁଦ୍ଧରେ ପ୍ରତିବାଦ କରିବା ପାଇଁ। ମୈଥିଳୀ ଶୃଙ୍ଖଳପାଉଚି, ଦୁଃଖ, ଅଭିମାନରେ । ତାର କାହା ପ୍ରତି ଭୟ ନାହିଁ, କାହା ପ୍ରତି ଖାତିର ନାହିଁ । କି ଶକ୍ତିଶାଳୀ ଏଇ ମୂର୍ତ୍ତି !

* * * * *

ତରଦିନ ସକାଳ ।

କାହ୍ନୁ ବେଳକରରେ ଖିଅର ହେଉଥିଲା । ବୋଉ ଆସି କହିଲା, ଗୋଟିଏ ଭଲ ପାତ୍ର ଠିକ୍ ହୋଇଚି । ଭଲ ଦବା ନବା କରିବେ । ଘଣ୍ଟା ଦେବେ, ରେଡ଼ିଓ ସାଇକେଲ୍...

ସେଥିରୁ ମତେ କଣ ମିଳିବ ?

ନାଇଁ, ଭଲ ପାତ୍ରଟାଏ ଜୁଟିଚି ହାତରୁ ଛାଡ଼ି ଦେଲେ—

ମିଳିବ ନାହିଁ, ଏମିତି ? ବେଶ୍ ନମିଳୁ, ବର୍ତ୍ତମାନ ବାହା ହୋଇ ପାରିବିନି—

ଭଲ ପାତ୍ରଟାଏ—

ଲକ୍ଷେ ଟଙ୍କା ଦେଲେ ବି ନୁହଁ । ଯାହାର ନିଜକୁ ପୋଷିବାର କ୍ଷମତା ନାହିଁ ସେ ପୁଣି ଆଉ ଗୋଟାକୁ ପୋଷିବ କିପରି ?

ସେମିତି ହେଲେ ତ ପୁଣି ବାହା ହବୁ, ନା ବାଡ଼ୁଅ ରହିବୁ ?

ନା, ମୋତେ ବାହା ହେବ ନାହିଁ ମୁଁ । ଘରର ଅବସ୍ଥା ଦେଖୁଚୁ । ପୁଣି କୋଉ ମୁହଁରେ କହୁଚୁ ବାହା ହେବାକୁ ? ଏତକ ପୋଷିବାକୁ ତ କ୍ଷମତା ନାହିଁ—

ଘର ମାଟି ଖାଇଲେ ତୋର କଣ ଗଲା ? କରଜ ହୋଇଚି, ଜମି ବନ୍ଧା ପଡ଼ିଚି, ଘର ଛପର ହୋଇନାହିଁ, ଏଥିପାଇଁ ତୁ କଣ ଆଉ ବାଡ଼ୁଅ ରହିବୁ ?

ବୋହୂକୁ ଆଣି କାହା ବାରଣ୍ଡାରେ ଠିଆ କରିବି ?

ନାଇଁ, ମୋ ସୁନାଟି ପରା, ତୁ ମନା କରନା —

ନା, ମୁଁ ବାଦ୍ୟା ହୋଇ ପାରିବି ନାହିଁ ।

ବାପା ବାହାର ଆସିଲେ, ବାଦ୍ୟା ହେବୁ ନାହିଁ, ଯିଏ ପାଖକୁ ତା ପାଖକୁ ଯିବୁ ! ଠକ୍କା କଣ କରୁଚୁ ? ଯିଏ ପିନ୍ଧୁ ତା ପିନ୍ଧୁ ଉଡ଼ାଉଚୁ । ସେ ଗଉଡ଼ଣୀ ଆମର କିଏ ? ତୁ ତା ପାଖକୁ କାହିଁକି ଯାଉ ? ଛି, ଛି, ଏସ୍ୱା କରିବାକୁ—

ବାପା !

ବାଦ୍ୟା ହବନି । ଆଜି ବଂଶର ମର୍ଯ୍ୟାଦା ତୋପାଡ଼ କରି ଖାଇବ ! ଯୋଗ୍ୟ ସୁଯୋଗ୍ୟ ପୁଅ ତ ! ଗଣ୍ଡି କି ଧରି କୁଳର ମର୍ଯ୍ୟଦା ବଢ଼ାଇବ !

ବାପା ! ବାପା !

ଗଉଡ଼ଣୀ ପାଖକୁ ଯିବା ତୋର କି ଦରକାର ? ତାକୁ ବି ଦେଖ୍ ଗୋଟାଏ ସୁଯୋଗ ମିଳିଯାଇଚି ।

ବାପା !

ଘରଟା ଅପରିଷ୍କାର ହୋଇଥିଲା । ପରିଷ୍କାର କଲା କାହ୍ନୁ ।
କବାଟର ଫାଙ୍କରେ ପୋଷ୍ଟପିଅନ ପକାଇ ଦେଇଥିଲା । ଚିଠିଟା
କାହ୍ନୁ ପଢ଼ିଲା । ମାଉସୀ ଚିଠି ଦେଇଛି ।

ମୋର କଲ୍ୟାଣ ନେବୁ । ମୋ ଖଡ଼ପୁରେ କଣ ବୁଝିଲୁ ? ଏଠି
ଚଳିବା ଅସମ୍ଭବ ହୋଇ ପଡ଼ିଲାଣି । ମୁଦ ପାଇଁ ପନ୍ଦର ଟଙ୍କା ଦେଇ-
ଥିଲି, ମୁଦ କଲୁ ? ତୁ କହିଥିଲୁ ଶୀଘ୍ର ଆସି ମତେ ନେଇ ଯିବାକୁ ।
ଆସିଲୁ ନାହିଁ କାହିଁକି ? ମା କିଏ ମାଉସୀ କିଏ ? ମୁଁ କଣ ତୋର
ମା ନୁହେଁ ? ହଁ, ତୁ କାହିଁକି ଗଣିବ ମାଉସୀକୁ ପରୁଆରୁ ? କଣ
କଲୁ ଶୀଘ୍ର ଲେଖିବୁ । ଶୀଘ୍ର ଆସି ମତେ ନେଇଯା—ତୋର
ମାଉସୀ

ମାଉସାଙ୍କ ଘରୁ ବାହାର ଯାଇଛି ମାଉସୀ, ଇଚ୍ଛାରେ ନୁହେଁ,
ବାଧ୍ୟ ହୋଇ । ମଉସା ଗୋଟାଏ ଖ୍ରୀଷ୍ଟିଆନ ସ୍ତ୍ରୀକୁ ନେଇ ରହିଛନ୍ତି ।
ବାହାର କରି ଦେଲେ ତାକୁ । ମୁଦ ପାଇଁ ଟଙ୍କା ଆଣିବାର ବର୍ଷେ
ଦୁଇ ବର୍ଷ ହୋଇଗଲାଣି । ତଥାପି ମୁଦ ହୋଇ ପାରିଲା ନାହିଁ । କହୁ
ଆସିଥିଲା କେଉଁଠି ହେଲେ ରଖାଇ ଦେବାକୁ । ସ୍ତ୍ରୀ ଜାତି ପୁରୁଷର
ପରାଧୀନତାରୁ ମୁକ୍ତି ପାଇବ ସ୍ୱାଧୀନ ଭାବରେ ଜୀବନ ଯାପନ
କରି । ନର୍ସ ହେବା ପାଇଁ ମାଉସୀର ଯୋଗ୍ୟତା ନାହିଁ । ସେଥିପାଇଁ
ସେ କଣ ଆସି ପାରିଲେନା ? ସ୍ୱାଧୀନ ଭାବରେ ବଞ୍ଚି ରହିବାକୁ
ହେଲେ ଆଉ କଣ କିଛି ଉପାୟ ନାହିଁ ? କାହାର ଭୁଲ ? ତାର
ନା ମାଉସୀର ? ମୁଦ ପାଇଁ ଟଙ୍କା ଆଣି ସେତକ ଖର୍ଚ୍ଚ କରି ଦେଇଛି
ସେ । ମନ୍ଦ ନୁହେଁ ତ ! ଚୋର, ବଦମାସ, ମିଥ୍ୟାବାଦୀ । ମାଉସୀର
ଅପେକ୍ଷା, ନିଷ୍ଫଳ ଅପେକ୍ଷା··ମାଉସୀର ଆଶା, ନିରାଶା !

ସ୍ତ୍ରୀକୁ ପୁରୁଷର ପରାଧୀନତାରୁ ମୁକ୍ତି ଦେବାକୁ ହେବ। ସ୍ତ୍ରୀ ପୁରୁଷର ଖିଆଲର ପୁତୁଳିକା ହୋଇ ନପାରେ। ପରାଧୀନତାର ଶୃଙ୍ଖଳରେ ଜୀବନକୁ ନଷ୍ଟ କରିବା ଉଚିତ ନୁହେଁ। କିନ୍ତୁ କିପରି ମୁକ୍ତ ହେବ? କିପରି ସ୍ୱାଧୀନତା ପାଇବ ନାରୀ ଜାତି? ଯେ ନିଜକୁ ସ୍ୱାଧୀନତା ଦେଇ ନପାରୁଛି, ସେ ଗୋଟାଏ ଜାତିକୁ ସ୍ୱାଧୀନତା ଦେବ କିପରି? ଆଦର୍ଶବାଦର ପ୍ରଚାର କରିବା ଅପେକ୍ଷା ଆଦର୍ଶବାଦର ପ୍ରତିଷ୍ଠା ପାଇଁ କାର୍ଯ୍ୟ କରିବା ଉଚିତ। ଏ ଆଦର୍ଶ କିଏ ଦେଲା ମାଉସୀକୁ? ସେ କହୁଥିଲା, ମାଉସୀ, ପରର ଅଧୀନରେ ତୁ କାହିଁକି ମାନିବୁ? ମୁଁ ତତେ ସ୍ୱାଧୀନତା ଦେବି। ମୁଁ ତତେ ରୋଜଗାରର ମନ୍ତ୍ର ଦେଖାଇ ଦେବି। ତୁ ରୋଜଗାର କଲେ ବେଶ୍ ସ୍ୱଚ୍ଛନ୍ଦରେ ଚଳିପାରିବୁ। କାହାକୁ ଅପେକ୍ଷା କରିବାକୁ ହେବ ନାହିଁ। କିନ୍ତୁ ସେ କଣ କଲା ତା ପାଇଁ? ମିଥ୍ୟାବାଦୀ, ଭଣ୍ଡ ତପସ୍ୱୀ!

*     *     *     *     *

ଗଉରୀ ଘରକୁ ଖୁଆଉଥିଲା। କାହ୍ନୁକୁ ଦେଖି ଗଉରୀ କାନ୍ଦି ଉଠିଲା।

କାହ୍ନୁ ପଚାରିଲା, ଘର ଭଲ ଅଛି ତ?

ଗଉରୀ କାନ୍ଦି କାନ୍ଦି ଉତ୍ତର ଦେଲା, ହଁ।

ତେବେ କାନ୍ଦୁଛୁ କାହିଁକି?

ଗଉରୀ କାନ୍ଦିବାରେ ଲାଗିଲା।

କାହ୍ନୁ ପଚାରିଲା, ଗଉରୀ, କଣ ହୋଇଛି କହ।

ଗଉରୀ କାନ୍ଦି କାନ୍ଦି କହିଲା, ବେଶ୍ ବନ୍ଧୁ ଘରେ ରହିଥିଲ ହୋଇ ଯାଇଥିଲ ମତେ!

କଣ ହେଲା କି?

ଭଣ ହେଲା କି ! ମୁଁ ତ ମୋର ବେଶ ଚଳୁଥିଲି । ତମକୁ କିଏ କହିଲା ଏଠିକି ଆସିବାକୁ ? ଯାଅ ତମର ଉପଦେଶ ଦରକାର ନାହିଁ ଏଠି ।

କଣ ହେଲା, ଘଟଣା କଣ ?

ଘଟଣା ଛାଡୁ । ମୁଁ କହୁଚି ତମେ ଚାଲିଯାଅ ଏଠୁ । ଆଉ ଏଠିକି ଆସିବା ଦରକାର ନାହିଁ । ଭାରି ଭଲଲୋକ !

କହିବୁ ନାହିଁ ତାହା ହେଲେ ?

ମୁଁ କେଉଁ ଦିନ ତମକୁ କହିଥିଲି ମୁଁ ତମକୁ ଭଲପାଏ ?

ହାଃ-ହାଃ-ମୁଁ କହିଚି ବା କେଉଁଦିନ ?

କହି ନାହିଁ ? ସନ୍ତୋଷ କହିଲା କେମିତି ?

ସନ୍ତୋଷ କହିଲା ?

ହଁ, ତମର ବନ୍ଧୁ ସନ୍ତୋଷ କହିଲା, କାହ୍ନୁ ତତେ ଭଲପାଏ ।

ସତେ ନା କଣ !

ସତେ ନା କଣ ! କେଉଁ କଥାଟା ତ ଶିଖିଚ ! ଏତେ ଅଭଦ୍ର ଏ ସନ୍ତୋଷ ! ଦିନକୁ ଜର । ମୁଁ ଶୋଇଚି ଦିଶ ପାଖରେ । ନିଦ ଲାଗି ଆସୁଚି । ହଠାତ୍ ନିଦ ଭାଙ୍ଗିଗଲା । ଚାହିଁ ଦେଖେ ତ ସନ୍ତୋଷ । ପଚାରିଲି, ଏତେ ରାତିରେ ! ସନ୍ତୋଷ ହସିଲା । କହିଲା, ସେଥିପାଇଁ ତ ଆସିଚି । କାହ୍ନୁଠାରୁ ମୁଁ କଣ ସୁନ୍ଦର ନୁହେଁ ? କାହ୍ନୁଠାରୁ ମୋର କଣ ବେଶୀ ଧନ ନାହିଁ ? କାହ୍ନୁଠାରୁ ମୋର କଣ ସମ୍ପତ୍ତି ନାହିଁ ? ଲକ୍ଷେ କାହ୍ନୁକୁ ମୁଁ ପୋଷିପାରେ ଗଉଣୀ । କହିଲି, ବାହାରି ଯାଅ ଏଠୁ । ସନ୍ତୋଷ ହସିଲା, କାହିଁକି ବାହାରି ଯିବି ? କହିଲି, କିଏ କହିଲା କାହ୍ନୁକୁ ମୁଁ ଭଲପାଏ ବୋଲି ? ମିଛୁଆ, ଯାଅ ଭାରି । ସନ୍ତୋଷ ଖିଲି ଖିଲି ହୋଇ ହସି ଉଠିଲା, କହିଲା କିଏ ? ତମର ପ୍ରିୟ, ତମର ବନ୍ଧୁ, ତମର ସ୍ୱାମୀ କାହ୍ନୁ !

ଗୋଟାଏ ଔଷଧ ବୋତଲ୍ ଥିଆ ହୋଇଥିଲା । ରାଗରେ ଫିଙ୍ଗି ଦେଲି ତା ଉପରକୁ । ବୋତଲଟା ତା ଦେହରେ ନ ବାଜି କାନ୍ଥରେ ବାଜି ଗୁଣ୍ଡାଗୁଣ୍ଡା ହୋଇଗଲା । ସନ୍ତୋଷ ମୋ ପାଖକୁ ଦଉଡ଼ି ଆସି ମତେ ତା ଛାତିରେ ଚାପି ଧରି କହିଲା, ରାଣୀ, ତମେ ମୋର । କାହ୍ନୁ ଖରାପ ଲୋକ ବଦମାସ୍, ମଦ ଖାଏ । ରାଧା ପାଖକୁ ଯାଏ । ବେଶ୍ୟା ପାଖକୁ ଯାଏ—। ରାଗରେ କାମୁଡ଼ି ଦେଲି ତା ହାତକୁ । ମତେ ଛାଡ଼ି ଦେଇ ପଛକୁ ଘୁଞ୍ଚିଗଲା । ଉପାୟ ନ ଦେଖି ପାଟିକଲି । ସୁମି ଆସିଲା । ସୁମି ଏପରି ଅବସ୍ଥାରେ ଦେଖି ପଚାରିଲା, ଗଉରୀ କଣ ହେଲା କି ? ମୁଁ କିଛି କହିବା ଆଗରୁ ସନ୍ତୋଷ କହିଲା, ଦେଖ ସୁମି, ମୁଁ ଯାଇ ଶୋଇଛି, ଛାଇ ନିଦ ଲାଗି ଆସୁଛି; ହଠାତ୍ ନିଦ ଭାଙ୍ଗିଗଲା ! ଦେଖିଲା ବେଳକୁ ଗଉରୀ ! କି ମିଛ ! ମତେ କହିବାକୁ ନଦେଇ ସନ୍ତୋଷ କହିବାରେ ଲାଗିଲା—କାହ୍ନୁକୁ ତୋର ଯୌବନରେ ଭୁଲାଇ ଦେଇଚୁ ବୋଲି ମତେ ଭୁଲାଇ ଦେବୁ ନା କଣ ? କହିବାକୁ ସମୟ ନଥିଲା । ହାତକୁ ଧରି ସାଙ୍ଗେ ସାଙ୍ଗେ ବାହାରି ଆସିଲି । ନା, ଆଉ ଦରକାର ନାହିଁ । ତମେ ଏଠିକି ଆସୁଛ ବୋଲି ସିନା କିଏ କେତେ ପ୍ରକାର କହୁଛି । ତମର ଆଉ ଏଠିକି ଆସିବା ଦରକାର ନାହିଁ ।

ମତେ କଣ ଚିହ୍ନି ନାହଁ ଗଉରୀ ?

ଚିହ୍ନିବା ଦରକାର ନାହିଁ । ଲୋକେ କହୁଛନ୍ତି—

ଲୋକେ କହୁଛନ୍ତି ବୋଲି ତୁ କଣ ଭାବୁ ସେ ସବୁ ଠିକ ବୋଲି ?

ମୁଁ ସିନା ଜାଣେ ତମେ ଭଲ ବୋଲି, କିନ୍ତୁ ଲୋକେ ସେ କହୁଛନ୍ତି ।

ମୁଁ ବଡ଼ ନା ଲୋକେ ବଡ଼ ? ଲୋକେ କହୁଚନ୍ତି ବୋଲି ମୁଁ ତ ଆଉ ତାଙ୍କ ପାଟିରେ ହାତ ଦେଇ ପାରିବ ନାହିଁ ! ଗଉରୀ ତୁ କଣ ମତେ ଆଜଯାଏ ଚିହ୍ନି ପାରିଲୁ ନାହିଁ ? ସନ୍ତୋଷ କହିଲା ମୁଁ ଖରାପ, ଆଉ ପାଞ୍ଚ ଜଣ କହିଲେ ମୁଁ ମଦ ଖାଏ, ମୁଁ ବେଶ୍ୟାସକ୍ତ, ତୁ କପରି ବିଶ୍ୱାସ କରୁଚ ଏହାକୁ ? ଗଉରୀ, ମୁଁ ତତେ କେତେ ଭଲପାଏ ! ତତେ ଯେତେ ଭଲପାଏ ମୋ ସାନ ଭଉଣୀକୁ ବି ସେତେ ଭଲପାଉ ନ ଥିବ । ତୋର କଣ ଶେଷରେ ଏହା କହିବାକୁ ଥିଲି ? ତୁ କଣ ଏ ମିଥ୍ୟାରେ ବିଶ୍ୱାସ କରୁ ?

ଗଉରୀ ଆଉ ଥରେ କାନ୍ଦି ଉଠିଲା । କହିଲା, ମୁଁ ବିଶ୍ୱାସ କରେନା ଜମା । କିନ୍ତୁ ଲୋକଙ୍କର ଏଇ କଥାକୁ ମୁଁ ଭାରି ଭୟକରେ ।

ଆଉ ସେଇଥିପାଇଁ ତୁ ଚାହୁଁନୁ ମୁଁ ଆଉ ଏଠିକି ଯେପରି ନ ଆସେ !

ନା, ନା, ମୁଁ କଣ କରିବ କିଛି ଠିକ୍ କରି ପାରୁନ କାହ୍ନୁ ଭାଇ । ସେତିକବେଳୁ ମୋ ମୁଣ୍ଡ ଯେମିତି ଖରାପ ହୋଇ ଯାଉଚି । ଭାଇ ! କି ବୀଭତ୍ସ ଏଇ ଲୋକଗୁଡାକ । କି କଦର୍ଯ୍ୟ ସେମାନଙ୍କର ବ୍ୟବହାର ! କି କୁତ୍ସିତ ସେମାନଙ୍କର କଥା !

କାହ୍ନୁ ଗଉରୀର ଅଳକ ସଜାଡ଼ି ଦେଇ ଦେଇ କହିଲା, ଗଉରୀ ସମସ୍ତେ ସେପରି ନୁହନ୍ତି ନେ । ଏମାନେ ମଣିଷ ନୁହନ୍ତି । ମଣିଷ ଏପରି ଖରାପ ହୋଇ ନ ପାରେ, ମନୁଷ୍ୟ ଏପରି ବୀଭତ୍ସ ହୋଇ ନ ପାରେ । ଏମାନେ ସୟତାନ । ମାନବରୂପୀ ସୟତାନ । ଏମାନଙ୍କ ଧ୍ୱଂସରେ ଯାଇଁ ମାନବ ଜାତିର କଲ୍ୟାଣ ! ମାନବିକତାର ଗଣ୍ଡି ଚିପି ମାରିଦେବେ ଏମାନେ । ମାନବିକତାର ପତାକା ଉଡ଼ୁଚି । ସେଇ ପତାକା ତଳେ ସମସ୍ତଙ୍କୁ ଏକଜୁଟ ହେବାକୁ ହେବ । ସମସ୍ତଙ୍କୁ ସତ୍ୟର ପ୍ରତିଷ୍ଠା ପାଇଁ, ସୁନ୍ଦରର ଉଦ୍ଧାର ପାଇଁ ଶିବର ରକ୍ଷା ପାଇଁ

ଶପଥ ନେବାକୁ ହେବ । ତାପରେ ସମାଜର, ମାନବ ଜାତିର ଏଇ ଶତ୍ରୁମାନଙ୍କ ବିରୁଦ୍ଧରେ ଆରମ୍ଭ ହେବ ଅଭିଯାନ । ଏଇ ସମ୍ପ୍ରଦାନ-ମାନଙ୍କୁ ସମୂଳେ ଧ୍ୱଂସ କରିବାକୁ ହେବ, ସମୂଳେ ନଷ୍ଟ କରିବାକୁ ହେବ । ଏମାନଙ୍କଠାରେ ସୁଗୁଣ ଥାଇପାରେ, ତଥାପି ଏମାନେ ସମ୍ପ୍ରଦାନ । ସମ୍ପ୍ରଦାନ ଠାରେ ସୁଗୁଣ ଥିଲେ ବି ତାହା ଦୁର୍ଗୁଣ ହୋଇଯାଏ । ଏ ସମ୍ପ୍ରଦାନ ହୋଇପାରନ୍ତି ଆମଠାରୁ ଶକ୍ତିଶାଳୀ, ତଥାପି ଆମକୁ ସେମାନଙ୍କ ବିରୁଦ୍ଧରେ ନିର୍ଭୀକ ଅଭିଯାନ ଚଳାଇବାକୁ ପଡ଼ିବ । ଧ୍ୱଂସ କରିବାକୁ ପଡ଼ିବ । ତା ନ ହେଲେ ଏ ମାନବ ସମାଜର ମୁକ୍ତି ହୋଇ ପାରିବ ନାହିଁ । ଯେତେଦିନ ଯାଏ ଏମାନେ ଏ ପୃଥିବୀରେ ନିଶ୍ୱାସ ଗ୍ରହଣ କରୁଛନ୍ତି, ଯେତେଦିନ ଯାଏ ଏମାନେ ସମାଜରେ ପ୍ରତିଷ୍ଠା ଲାଭ କରିଛନ୍ତି ସେତେଦିନ ଯାଏ ସମାଜର ମଙ୍ଗଳ ହୋଇ ନପାରେ, ମନୀଷ ସୁନ୍ଦର ହୋଇ ନ ପାରେ—

ଗଉଣୀ କହିଲା, ଭାଇ, ସେ ସବୁ ବଡ଼ କଥା, ମୁଁ କିଛି ବୁଝିପାରୁ ନାହିଁ । କିନ୍ତୁ ତମେ ସେପରି ଖରାପ ଜାଗାରେ ଗୃହକର୍ମ କରିଛ କାହିଁକି ଶୁଣେ ? ତମକୁ କଣ ଆଉ ଗୃହକର୍ମ ମିଳୁନ ? ସେଠୁ ଚାଲି ଆସ । ସେଭଳି ଲୋକଙ୍କ ପାଖରେ ଗୃହକର୍ମ କରିବା ଉଚିତ୍ ନୁହଁ ।

କାହ୍ନୁ ଚାଲି ଆସିଲା । ସନ୍ତୋଷ, ବନ୍ଧୁ ସନ୍ତୋଷ, ଆଶ୍ରୟଦାତା ସନ୍ତୋଷ କି ଖରାପ ! ନା ଏହାର ଉତ୍ତର ଦେବାକୁ ପଡ଼ିବ । ସନ୍ତୋଷ ବଡ଼ଲୋକ ହୋଇପାରେ, ସନ୍ତୋଷ ବନ୍ଧୁ ହୋଇପାରେ, ସନ୍ତୋଷ ଆଶ୍ରୟଦାତା ହୋଇପାରେ, ପୃଥିବୀର ଭଗବାନ ହୋଇ ପାରେ, ତାକୁ ଶିକ୍ଷା ଦେବାକୁ ହେବ । ତାକୁ ଶିଖାଇ ଦେବାକୁ ହେବ, ଗରିବର ଧନ ନଥାଇ ପାରେ, ସୌନ୍ଦର୍ଯ୍ୟ ନଥାଇ ପାରେ, ମର୍ଯ୍ୟାଦା ନଥାଇ ପାରେ କିନ୍ତୁ ସମ୍ମାନ ଅଛି, ମନୁଷ୍ୟତା ଅଛି । ସେ

ମଣିଷ । ଗରିବ ହେବା ପାପ ନୁହେଁ । ଆଶ୍ରୟହୀନ ହେବା ଦୋଷ ନୁହେଁ ।

ସନ୍ତୋଷ ଡ୍ରଇଁ ରୁମରେ ବସିଥିଲା । କାହ୍ନୁ ଯାଇ ଗୋଟାଏ କାଉଚ୍ ଉପରେ ବସି ପଡ଼ିଲା । କିଛି ସମୟ ନୀରବରେ କଟିଗଲା । ସନ୍ତୋଷ ପ୍ରଥମେ କହିଲା, କେଉଁଦିନ ଆସିଲୁ ?

ଆଜି ସକାଳେ ।

ଶୁଣିଚୁ ତମ ଗଉସିଙ୍କ ଗୁଣ ?

ଶୁଣିବା ଦରକାର ନାହିଁ ।

ଶୁଣିଚୁ ତା ହେଲେ । ମୁଁ ଶୋଇଚି, ରାତି ଅଧ, ହଠାତ୍ ନିଦ ଭାଙ୍ଗିଗଲା । ଉଠି ଦେଖେ ତ ଗଉସି ମୋ ବିଛଣାରେ, ଛି—

ସନ୍ତୋଷ !

ତୁ ସେଠିକି କାହିଁକି ଯାଉଚୁ ଶୁଣେ—

ଶୁଣିବା ଦରକାର ନାହିଁ, ଚୁପ୍ କର ! ଭଦ୍ରତା ଆଉ କାହା ପାଖରେ ଦେଖାଇବୁ । ମୁଁ ତତେ କେବେ କହିଥିଲି, ମୁଁ ଗଉସିକୁ ଭଲପାଏ ? ମିଥ୍ୟାବାଦୀ !

ଓ ! ତା ହେଲେ ଘରୁ ଫେରି ଖାଆନ୍ତାଣୀଙ୍କ ସଙ୍ଗେ ଦେଖା ହୋଇ ଯାଇଚି !

ଏପରି କଥା କହିଲା ବେଳକୁ ତୋ ଜିଭ ପୋଡ଼ିଗଲାନି ?

ଏଇଟା ସତ୍ୟଯୁଗ ନୁହେଁ । ତାପରେ ମୁଁ ତ କିଛି ମିଛ କହିନି !

ନାଇଁ ଖାଲି ସତ କହୁଚୁ !

ସତ କହୁ ନାହିଁ ? ତୁ ସେଠିକି କାହିଁକି ଯାଉଚୁ ଶୁଣେ ? ଗଉସି ତୋର କଣ ? ତା ପ୍ରତି ତୋର ଏତେ ସହାନୁଭୂତି କାହିଁକି ? ମୁଁ ସିନା ମିଛ କହୁଚି, ଆଉ ଦଶଜଣଙ୍କୁ ପଚାରିଲୁ । ସେମାନେ

କଣ କହୁଥାନ୍ତି ! ସେମାନେ ସମସ୍ତେ କଣ ମିଛୁଆ ? ବାଙ୍କା ସନ୍ତୋଷ ତୁ ଆଜି ସତ୍ୟବଣ ଗଢ଼ୁଛୁ !

ସନ୍ତୋଷ ! ବନ୍ଧୁ ବୋଲି ତତେ ଆଜି କ୍ଷମା ଦେଲି, ନ ହେଲେ—

ନ ହେଲେ କଣ କରିଥାନ୍ତୁ ଶୁଣେ ?

କଣ କରିଥାନ୍ତି ? ଆଜି ତତେ ଏଇଟି ହତ୍ୟା କରିଥାନ୍ତି !

ହାଃ–ହାଃ–ହାଃ– ପ୍ରେମିକା ପାଇଁ ନିଜ ଜୀବନକୁ ତ ବେଶ୍ ପାଣି ଛଡ଼ାଇ ପାରୁ କାହ୍ନୁ ! ଘରେ ଖାଇବାକୁ ନାହିଁ । ବାପା କରଜରେ ବୁଡ଼ିଲେଣି । ପୁଅଙ୍କର ବାଲିଗି ଦେଖ ! ଗୋଟାଏ ବାନ୍ଧିବାକୁ ନେଇ ଗୁଳିଚ କୁସ୍ତୁଲିଲା ! କମ ରସିକ ତ ନୁହଁ ବାବୁ !

କାହ୍ନୁ କାଉର ମୁଣ୍ଡ ଠିଆ ହେଲା, କହିଲା, ସନ୍ତୋଷ ସାବଧାନ ! ଧନ ଗର୍ବରେ ଭାବନା ଯେ ତୁ ଯେତେ ଅନ୍ୟାୟ କଲେ ମଧ୍ୟ ତୋର ସବୁବେଳେ ଜୟ ହେବ । ମନେରଖି, ଯେଉଁ ଦିନ ହେଲେ ମୁଁ ଏହାର ପ୍ରତିଶୋଧ ନେବି, ନେବି, ନେବି !

ସନ୍ତୋଷ ହାଃ–ହାଃ–ହାଃ ହୋଇ ହସି ଉଠିଲା । କାହ୍ନୁ ଦୁଆର ବନ୍ଦ କରି ବାହାରକୁ ଆସିଲା । ଆଗରେ ସୁମିତ୍ରା । ସୁମିତ୍ରା ବାଟ ଅଟକାଇ କହିଲା, କଣ ହୋଇଛି, ଏପରି କାହିଁକି ହେଉଛ ?

କାହ୍ନୁ କହିଲା, ବାଟ ଛାଡ଼ ସୁମି ।

ଶୁଣ, କଥା କଣ ?

କାହ୍ନୁ ସୁମିତ୍ରାକୁ ଠେଲି ଦେଇ ବାହାରକୁ ଚାଲି ଆସିଲା । ସନ୍ତୋଷର ହସ ବନ୍ଦ ହୋଇ ନ ଥାଏ । କି ତୀବ୍ର ସେ ହସ, କି କୁତ୍ସିତ ସେ ହସ !

ରାସ୍ତା ଉପରକୁ ଆସିଲା କାହ୍ନୁ । ଦୁଇ ଦିଗକୁ ରାସ୍ତା ଲମ୍ବି ଯାଇଛି । କେଉଁଆଡ଼କୁ ଯିବ କାହ୍ନୁ ? ଗୋଟାଏ ଚାକିରି ଦରକାର । ତା ନ ହେଲେ ଚଳିବ ବା କିପରି !

ଆକାଶରେ ମେଘମାଳା ଘସି ବୁଲୁଛି । ମେଘର ଦୋଳନ କି ସୁନ୍ଦର ଦେଖାଯାଉଛି । ଥଣ୍ଡା ପବନ ବହୁଛି । ନିକଟରେ ବର୍ଷା ହୋଇପାରେ । କେଉଁଆଡ଼କୁ ଯିବ ? ଭୋକ ହେଉଛି । କାଲି ରାତି ଯାକ ଉପବାସ । ଆଜି ସକାଳେ ବି କିଛି ଖିଆ ହୋଇ ନାହିଁ । ମରିଗଲେ ହୁଏତ ଏ ଦୁଃଖରୁ ତ୍ରାହି ମିଳନ୍ତା । କିନ୍ତୁ ମୃତ୍ୟୁର ସେ ତୁଷାରଧବଳ ଅଙ୍କ କାହିଁ ? କାହିଁ ସେଇ ଶାନ୍ତିପ୍ରଦ ପ୍ରଶାନ୍ତ ମୃତ୍ୟୁ ?

ଆଗରେ ରାଧାର ଘର । ଚାକିରୀ ପାଇଁ ଚେଷ୍ଟା କଲେ ମନ୍ଦ କଣ ! ରାଧାର ସ୍ୱାମୀ ସରକାରୀ ଅଫିସର । ସେ ଇଚ୍ଛା କଲେ ଯେ କୌଣସି ଚାକିରୀ ଦେଇ ପାରନ୍ତି ହୁଏତ ।

ରାଧାର ସ୍ୱାମୀ ଅଫିସକୁ ଯିବାକୁ ବାହାରିଥିଲେ । କାହ୍ନୁ ଯାଇ ନମସ୍କାର ହେଲା ।

କଣ ଦରକାର ?

ଚାକିରୀ ।

ଚାକିରୀ କଣ ଏତେ ଶସ୍ତା ? କଣ ପାଶ କରିଛ ?

ଆଇ. ଏ. ପ୍ଲକ୍ଡ଼...

ପ୍ଲକ୍ଡ଼ କ୍ୱାଲିଫିକେସନ ନୁହେଁ ।

ତେବେ ମାଟ୍ରିକ ।

ମାଟ୍ରିକ୍ ! ହୋପ୍‌ଲେସ, ମାଟ୍ରିକ କ୍ୱାଲିଫିକେସନ ନୁହେଁ !

ଟାଇପ୍ ରାଇଟିଂ ଜାଣେ ।

ରାଧା ଆସିଲା । ଆରେ କାହ୍ନୁ ଭାଇ ସେ ।

ଏ ତମର ଭାଇ ? କଦମ୍ବ ଫୁଲ ପରି ବାଳ, ଚିରା କାମିଜ, ଛିଣ୍ଡା ଚଟି, ଏ ପୁଣି ତମର ଭାଇ ! ଆହା, ହା !

ଭଲ କରି ଦେଖ ଗୋ ଭ୍ରାତାଙ୍କ ବଦନ,
ଉପକାରୀ ସୁରୁଚିର ଅଟନ୍ତି ଏ ଜନ !

ରାଧା କହିଲା, ଛି, ସବୁବେଳେ ଥଟ୍ଟା କଣ ।

ମୋର ଯେ ଅଛା—ଆସିଚନ୍ତି ଏ ଗୁଳକସ୍ତି ପାଇଁ । କି ଗୁଳକସ୍ତି କହିବେ ଏ ? ମାଟ୍ରିକ୍ ପାଶ କରିଚନ୍ତି । ମାଟ୍ରିକକୁ କିଏ ପଚାରେ ? ମୋ ଡ୍ରାଇଭର ତ ମାଟ୍ରିକ ପାଶ କରିଚି । ଆଗ୍ଭ ଅଫିସ ଏକ୍ସ-ପିରିଏନ୍‌ସ ଅଛି ?

ଅଛି ।

କେଉଁ ଅଫିସରେ କାମ କରୁଥିଲ ?

ସନ୍ତୋଷ ବାବୁଙ୍କ ପ୍ରାଇଭେଟ ସେକ୍ରେଟରୀ ଥିଲି ।

ସନ୍ତୋଷ ବାବୁ, କୋଉ ସନ୍ତୋଷ ବାବୁ ? ହୋ ହୋ, ମନେ ପଡ଼ିଲା, ଏଁ, ତମେ ସେଠି କାମ କରୁଥିଲ ? ତମ ନାଁ କଣ ତ ?

କାହ୍ନୁ ଚରଣ ।

କାହ୍ନୁ ଚରଣ ତମେ ? ଅନେକ ଦିନରୁ ନାଁ ଶୁଣିଥିଲି କିନ୍ତୁ ଦେଖିବାର ସୁଯୋଗ କେବେ ମିଳି ନ ଥିଲା ! ଯାହା ହେଉ ଦେଖା ମିଳିଲା । ପରମ ସୌଭାଗ୍ୟ ମୋର !

ଯଦି ଗୋଟାଏ ସର୍ଭିସ ଦେଇ ପାରନ୍ତେ !

ନିଶ୍ଚୟ, ତମକୁ ମିଳିବନି ତ ଆଉ କାହାକୁ ମିଳିବ ? ଏପରି ଚରିତ୍ରବାନ ଲୋକଙ୍କ ପାଇଁ ସରକାରୀ ଗୁଳକସ୍ତି ନାହିଁ ।

କିଏ କହିଲା ମୁଁ ଚରିତ୍ରହୀନ ?

କିଏ କାହିଁକି କହିବ ? ଆହା କେତେ ବଡ଼ କଥାଟାଏ କହି ଦେଲଉଚ ! ଚରିତ୍ରବାନ ସୁଚରିତ୍ର ପୁରୁଷର ଆଦର୍ଶ ତମେ ! ରାଧା, ତମେ ନା କହୁଥିଲ ସେଦିନ ତମର ଏଇ ଭାଇଙ୍କ କଥା ସିଏ ଗୋଟାଏ ବାଧବାକୁ ରଖିଛନ୍ତି !

କାହ୍ନୁ ରାଧା ମୁହଁକୁ ଚାହିଁଲା । ରାଧାର ମୁହଁ ଲଜ୍ଜାରେ ନାଲି ହୋଇଗଲା । ତଳକୁ ମୁହଁ କରି ରାଧା କହିଲା, ମୁଁ କେଉଁ ଦିନ କହୁଥିଲି ?

ନା, ତମେ କାହିଁକି କହିବ ? ଓଃ ଭାଇ ପରା ! ସେଥିପାଇଁ ଡର ଲାଗୁଛି । ଏପରି ଛତରଖିଆଙ୍କୁ କେଉଁଦିନ ଭାଇ କଲମ ? ଚରିତ୍ରହୀନ ମଦ୍ୟପ, ମି: ଏଲ: କାନୁନଗୋ ଏମ୍. ଏସ. ସି. ଙ୍କ ସ୍ତ୍ରୀଙ୍କ ଭାଇ ହୋଇପାରେ ? ମିଛ, ମିଛ ! ମୁଣ୍ଡରେ କଦମ୍ବ ଫୁଲ ପରି ବାଳ, ଆଖି ଦିଟା ବଡ଼ ବଡ଼, କାନ ଦିଟା ହାତୀ କାନ ପରି, ନାକଟା ଚେପଟା, ଦାନ୍ତ ବାହାରିଛି, ଏଇ ପୁଣି ମୋର—ହାଃ—ହାଃ—ହାଃ, ପଙ୍ଗପାଳ ! ସର୍ଭିସ ! ଲାଜ ମାଡୁନି ?

ରାଧାର ପୁଅ ମଣ୍ଟୁ ଏଇ ସମୟରେ ଆସିଲା । କହିଲା, ବାପା !

କଣରେ ?

ପକେଟ ଦେଖା ।

ଛି, ମୁଁ ପରା ଅଫିସ ବାହାରିଛି ।

ନା ଦେଖା ।

ଛି ମୋ ସୁନାଟି ପରା ।

ନା ଦେଖା, ନ ଦେଖେଇଲେ ଆଜ ଖାଇବନି କହୁଛି ।

ହଉ ଏଇ ପକେଟ ଦେଖଉଛି, ଅଳ୍ପ ପରିଶ୍ରା କରିବୁ ? ନ ହେଲେ ସବୁ ଓଦା ହୋଇଯିବ ଯେ ।

ହଠାତ୍ ବର୍ଷା ଆରମ୍ଭ ହୋଇଗଲା । କାହ୍ନୁ ନମସ୍କାର ହୋଇ କହିଲା, ଆଜ୍ଞା ମୁଁ ଆସେ ତେବେ ।

ରାଧା କହିଲା, ବର୍ଷାରେ ?

ପଙ୍ଗପାଳଙ୍କର ଖରା ଯାହା ବର୍ଷା ତାହା ।

କାହ୍ନୁ ବର୍ଷାରେ ବାହାରକୁ ବାହାରି ଗଲା । ରାଧା ଡାକୁଥାଏ କାହ୍ନୁ ଭାଇ, କାହ୍ନୁ ଭାଇ !

ଓଃ, କି ଶୀତ ହେଉଛି ! ରିକ୍ସାଟାଏ କଲେ ହୁଅନ୍ତା । କିନ୍ତୁ ପଇସା ନାହିଁ ଯେ । ଏଇ ହୋଟେଲର ବାରଣ୍ଡାକୁ ଉଠିଗଲେ ହୁଅନ୍ତା ।

ହୋଟେଲର ବାରଣ୍ଡାକୁ ଉଠି ଠିଆ ହେଲ କାହ୍ନୁ । ଓଦା ମାଟିର ସ୍ନିଗ୍ଧ ବାସନା ଭାସି ଆସୁଛି । ହୋଟେଲ ଭିତରୁ ମାଂସ ଝୋଳର ସୁସ୍ୱାଦୁ ଗନ୍ଧ ଆସୁଛି । ଏ ଥଣ୍ଡାରେ ଯଦି କପେ ଚା ଅନ୍ତତଃ ମିଳି ପାରନ୍ତା, କିମ୍ବା ସିଗାରେଟ କେତେ ଖଣ୍ଡ । ତାନିଜ ଲୁଗା ସବୁ ଓଦା ହୋଇ ଯାଇଛି । ଖଣ୍ଡେ ସିଗାରେଟ ! ପକେଟରେ କାଲି ଠାରୁ ରହିଛି ଖଣ୍ଡେ ସିଗାରେଟ । ସିଗାରେଟ ବାହାର କଲା କାହ୍ନୁ । ବର୍ଷାରେ ଓଦା ହୋଇ ନଷ୍ଟ ହୋଇ ଯାଇଛି ।

ଆସନ୍ତୁନା ଭିତରକୁ !

ନାଇ, ଏଇଠି ଠିକ୍ ହେଉଛି !

ଆସନ୍ତୁନା, ବାହାରେ ବଡ଼ ଥଣ୍ଡା ।

ନା ଓଦା ହୋଇଛି, ଭିତରକୁ ଗଲେ ବି ଥଣ୍ଡା ଲାଗିବ ।

ତଥାପି ଏ ବାରଣ୍ଡାଠାରୁ ନିଶ୍ଚୟ ଗରମ ହେବ !

ଦରକାର ନାହିଁ, ଧନ୍ୟବାଦ !

ଏଇ ଆସନ୍ତୁନା ମାଂସ ଫ୍ରାଏ ହୋଇଛି—

ଦରକାର ନାହିଁ ।

ଗରମ ପୁରି, ତରକାରି—

ଦରକାର ନାହିଁ, ବିଶେଷ ଧନ୍ୟବାଦ !

ଅନ୍ତତଃ କପେ ଚା ।

ଚା ମୁଁ ଖାଏ ନାହିଁ ।

ତାହେଲେ—ତାହେଲେ ଅନ୍ତତଃ—

ପଇସା ମୋଟେ ନାହିଁ ପାଖରେ ।

କ ଅଭଦ୍ର ଏଇ ଲୋକ ଗୁଡ଼ାକ ! ମଣିଷକୁ ଭାବିବାକୁ ବି ସମୟ ଦେବେନି । ନା, ଏଠି ଠିଆ ହେଲେ ଚଳିବନି । କାନ୍ଧକୁ ହୋଇଲି ବାରଣ୍ଡାରୁ ତଳକୁ ଓହ୍ଲାଇଲା । ବର୍ଷା ପୂର୍ବ ପରି ଚାଲିଚି ।

ଗଉରୀ ଘର ପାଖରେ । ନା, ଗଉରୀ ଘରକୁ କାହିଁକି ବା ଯିବ ? ବସାକୁ ଚାଲିଗଲେ ଭଲ ହେବ । ଗଉରୀ, ସେ କିଏ ନିଜ ଭଉଣୀ ? ତେବେ ଅନ୍ୟ ପାଇଁ ଏତେ ଦୁଃଖ ଭୋଗ କରିବ କାହିଁକି ? ନା, ଆଜି ଗଉରୀ ଘରକୁ ଯିବନି । ସେ ଯିବା ଆଗରୁ ଗଉରୀ ତ ଚାଲିଥିଲା ପୁଣି ! ସେ ଆଜି ନ ଗଲେ ଗଉରୀ ବି ରହିବ । ସେ ଯିବା ଦ୍ୱାରା ଦୁଇ ପକ୍ଷର କଷ୍ଟ । କି ଦୁର୍ନାମ, ନିନ୍ଦା, ଅପବାଦ ! ମିଥ୍ୟା ସତ୍ୟ ରୂପେ ଠିଆ ହୋଇଛି । ରାଧା, କି ନିର୍ମମ, କି ନିଷ୍ଠୁର ! ଦିନେ ଯେ ଥିଲା ଅନ୍ତରର ଆରାଧ୍ୟା ଦେବୀ, ଦିନେ ଯେ ଥିଲା ମନର ମାନସୀ, ସେ ପୁଣି ଆଜି ତା ବିରୁଦ୍ଧରେ ଏତେ କଥା କହିବାକୁ ସାହସ କଲା କିପରି ? ଗଉରୀ ରାଧାକୁ କେତେ ଭଲ ପାଉ ନ ଥିଲା । ତା ନାଁରେ ପୁଣି ଏ ଅପବାଦ ? ଗୋଟାଏ ପିସ୍ତଲ ଯଦି ଥାଆନ୍ତା ! କିମ୍ବା ଗୋଟାଏ ତୀକ୍ଷ୍ଣ ଛୁରୀ ! ଇସ୍ ମଟରଟାଏ ଚାଲି-ଗଲା । ରାସ୍ତା ଉପରେ ଜମି ଥିବା ନାଲି ପାଣି ଆସି ଦେହ ସାରା ହୋଇଗଲା । ଇସ୍ ସବୁ ଗେରୁଆ ହୋଇ ଯାଇଚି ! ଭୋକ ହେଉଚି । ପାଦରୁ ଚଳନ ଶକ୍ତି କିଏ ଯେପରି କାଢ଼ି ନେଇଚି । ଆଉ କେତେ ଦୂର ? ଓଃ, ଏ ପଥର ଶେଷ ନାହିଁ ଯେପରି !

ଛାତରୁ ପାଣି ଝରୁଚି । ବିଛଣା ଓଦା ହୋଇଗଲାଣି । ବିଛଣାକୁ ଗୋଟାଇ ଗୋଟାଏ କଣକୁ ଟେକିଦେଲା କାନ୍ଥ । ଓଦା ଲୁଗା ବଦଳି ପକାଇଲା । ସପଟା ଗୋଟାଏ କଣକୁ ପକାଇ ଶୋଇଲା । କିନ୍ତୁ ନିଦ ଆସୁନି ଜମା । ପେଟରେ ଭୋକ, ନିଦ ଆସିବ କେଉଁଠୁ ?

ବାହାରେ ବର୍ଷା ଅବିରାମ ଗତିରେ ଚାଲିଛି । ଆକାଶରୁ ବର୍ଷା ଝରୁଛି, ନା, ଆକାଶର ଆଖିରୁ ଲୁହ ଝରୁଛି ? ଆକାଶ କାନ୍ଦୁଛି । କେଉଁ ଏକ ବ୍ୟଥା ମ୍ଳାନ ହୃଦୟର ରୂପ ନେଇଛି ବର୍ଷାର ଏଇ ଧାରାରେ । ଅତୀତର କରୁଣ ସ୍ମୃତି ମନେ ପଡୁଛି ହୁଏତ ॥ ସେଦିନ ଥିଲା ହୃଦୟର ମାନସୀ ପ୍ରିୟା, ସେଦିନ ଥିଲା କଳରବ ମୁଖରିତ ରଜନୀ, ଥିଲା ଶତ ଶତ ପ୍ରଣୟାସିକ୍ତ ମୁହୂର୍ତ୍ତ, କିନ୍ତୁ ଆଜି ନାହିଁ ସେଦିନର ପ୍ରିୟା, ମନର ମାନସୀ, ହୃଦୟର ଆରାଧ୍ୟା ଦେବୀ । ସେ ଦିନର ପ୍ରଣୟ ଯେଉଁ ଜୀବନକୁ ମୁଖରିତ କରି ତୋଳିଥିଲା, ଆଜି ସେଇ ପ୍ରଣୟର ସ୍ମୃତି ଜୀବନର କଳରବକୁ ହତ୍ୟା କରୁଛି ଅତି ଅମାନୁଷିକ ରୂପେ । ପ୍ରିୟା ଚାଲିଯାଇଛି ନା, ହୁଏତ ବନ୍ଦିନୀ କାରା ନିଷ୍ଠୁର ପାଷାଣ କାରାରେ । ଆକାଶ ଗାଉଛି ତାର ବ୍ୟର୍ଥ ପ୍ରଣୟର କଥା, ଯେ ତାର ସମସ୍ତ ଆନନ୍ଦ ଅପହରଣ କରିଛି ସେଇ ବ୍ୟର୍ଥ ପ୍ରଣୟର କଥା––କି କରୁଣ, କି ମର୍ମନ୍ତୁଦ ସେ ଗାନ, ନିରାଶାର ଗାନ, ବ୍ୟର୍ଥତାର ସଙ୍ଗୀତ ! ଜୀବନରେ ସବୁଠାରୁ ମର୍ମନ୍ତୁଦ ଏଇ ବ୍ୟର୍ଥତା, ଯାହା ଜୀବନକୁ ସୁନ୍ଦର କରେ ନାହିଁ ଅଥଚ ମ୍ଳାନ କରେ, ଆଲୋକ ଦିଏ ନାହିଁ, ଅଥଚ ଦହନ କରେ ।

ହୃଦୟର ଅଶାନ୍ତ ନୀରବ ଚିତ୍କାର ଦେହର ପ୍ରତି ଅଣୁ ପରମାଣୁ ଭେଦ କରୁଛି ଯେପରି । ପ୍ରାଣର ଏ ଅଶାନ୍ତ ଅନ୍ତରର ଏ ନୀରବ କ୍ରନ୍ଦନ କାହା ଆଗରେ କହିବ ? କିଏ ଜାଣୁଛି ହୃଦୟର ଏ ଚିତ୍କାର ? ପ୍ରାଣର ଏ ଆକୁଳ ନିବେଦନ ? ଚତୁର୍ଦ୍ଦିଗର ଅଶାନ୍ତ କୋଳାହଳ ମଧ୍ୟରେ ହଜି ଯାଇଛି ଜୀବନର ଦୁଃଖ, ପ୍ରାଣର ଅଶ୍ରୁଳ ନିବେଦନ !

କାହାପାଇଁ ଏ ଯନ୍ତ୍ରଣା ? କାହା ପାଇଁ ଏତେ ଦୁଃଖ ? ତରୁଣୀ, ତରୁଣୀ ଏତେ ଦୁଃଖ ପାଇଁ ଦାୟୀ । ତରୁଣୀ ପାଇଁ ରୂପସୀ

ଗଲା । ଆଉ ଗୃହକଷ୍ଟ ମିଳିବ କି ନାହିଁ କିଏ ଜାଣେ ? କେତେ ଦିନ ଉପବାସ ରହିବାକୁ ପଡ଼ିବ କିଏ ଜାଣେ ? ଗଉସ୍ଥ ମରଯାନ୍ତା ହେଲେ ! ଛି, ଛି, ଗଉସ୍ଥ କଣ ଏଥି ପାଇଁ ଦାୟୀ ! ସେ ନିଜେ ଦାୟୀ ! ଗଉସ୍ଥ କଣ ତାକୁ ଯିବାକୁ କହିଥିଲା ତା ଘରକୁ ? ସେ ତେବେ କାହିଁକି ଗଲା ? ଓଃ ଯନ୍ତ୍ରଣାରେ ଦେହ କଣ ହୋଇ ଯାଉଚି ସେପରି ! ଭଗବାନ ଏପରି ଦୁଃଖ ଆଉ କାହାକୁ ନଦିଅ ! ଆଃ—କି ଯନ୍ତ୍ରଣା !

ସନ୍ତୋଷକୁ କ୍ଷମା ମାଗିଲେ ସେ କଣ କ୍ଷମା ଦେବ ନାହିଁ ? ସେ ପୁଣି କଣ ଗୃହକଷ୍ଟ ଦେବନି ? ନା, ଆଜି ଯାଇ କ୍ଷମା ମାଗିବାକୁ ପଡ଼ିବ । ଗରିବ ପକ୍ଷରେ ମାନ ଅଭିମାନ କଣ ? ବଡ଼ ଲୋକଙ୍କୁ ସାଜେ ସେ ସବୁ । ସନ୍ତୋଷ ହୁଏତ ଗାଳି ଦେବ, ମାରିବ । ଦେଉ୍ ମାରୁ, ଗାଳି ଦେଉ, ଅପମାନ ଦେଉ କ୍ଷତି କଣ ? ଗରିବର ମାନ ଅଭିମାନ କଣ ? ଓଃ ପେଟରୁ ଗୋଟାଏ ଯନ୍ତ୍ରଣା ବାହାରୁଚି । ଅସହ୍ୟ ଏ କ୍ଷୁଧା, ଅସହ୍ୟ ଏ ଯନ୍ତ୍ରଣା । କାହ୍ନୁ ପିଲାଙ୍କ ପରି ଯନ୍ତ୍ରଣାରେ କାନ୍ଦି ଉଠିଲା ।

*　　*　　*　　*　　*

ବାହାରେ ସ୍ଥପ୍ନାମ୍ଲାନ ଆସନ୍ନ ଗୋଧୂଳି । ଆକାଶ ପରିଷ୍କାର ହୋଇ ଯାଇଚି । କେତେ ସମୟ ଶୋଇପଡ଼ିଲା କାହ୍ନୁ ।

ସନ୍ତୋଷ ଗୃହ ଖାଉଥିଲା । କାହ୍ନୁ ଯାଇ ବସିଲା ଗୋଟାଏ କାଉଚ୍ ଉପରେ ।

ପୁଣି ଆବିର୍ଭାବ ହେଲ ଯେ !

ମୋର ଦୋଷ ହୋଇଚି ।

ତା ପରେ ?

କ୍ଷମା ମାଗୁଚି ।

ତା ପରେ ?

ରୁକସ—

ଓଃ ଖୁବ୍ ଶୀଘ୍ର ଚେତନା ଫେରିଲା ତେବେ ।

କାହ୍ନୁ ସନ୍ତୋଷର ହାତ ଧରି କାନ୍ଦ କାନ୍ଦ କହିଲା, ହଁ ଭାଇ ଫେରିଆସିଚି, ଫେରି ଆସିଚି ବିଜୟୀ ଭାବରେ ନୁହେଁ, ବିଜିତ ଭାବରେ । ମୋର ପରାଜୟ ହୋଇଚି । ଗରିବର ବିଜୟ କେଉଁଦିନ ହେଲେ ହୁଏ ନାହିଁ ।

ଗୁ’ ଖାଇବୁ ?

ହଁ, ଭାଇ ଭାରି ଭୋକ ହେଉଚି, କାଲି ଠାରୁ କିଛି ଖାଇ ନାହିଁ । ମରିଯିବି ମୁଁ, ମତେ ବଞ୍ଚାଅ; ମତେ ବଞ୍ଚାଅ —

ଆଉ ତମ ଗଉରୀ ?

ତା କଥା ମତେ କହ ନାହିଁ ।

କଣ ବିତୃଷ୍ଣା ଆସି ଗଲାଣି ?

ଅସନ୍ତୋଷ !

ପୁଣି ଫେରିବାକୁ ଚେଷ୍ଟା କରୁଚୁ ନା କଣ ?

ନା, ତଥାପି ଯାହା ଯାଇଚି, ଯାଇଚି । ପୁଣି ସେହି କଥାକୁ ମନେ ପକାଇଲେ ଲାଭ ବା କଣ ? ସେ କଥା ମତେ ଆଉ କହ ନାହିଁ । ପୁରୁଣା ମରିଯାଇଚି । ନୂଆ କଥା କହ ।

ଆଚ୍ଛା ଛାଡ଼ି ସେ କଥା, ତେବେ କାଲି ଠାରୁ ତୋ ପୋଷ୍ଟରେ ଯୋଗ ଦେବୁ ନିଶ୍ଚୟ ।

ନିଶ୍ଚୟ ।

ପୁଣି ଯଦି ଗଉରୀ ମନା କରେ—

ନା, ଗଉରୀ ଘରକୁ ଯିବା ବନ୍ଦ କରି ଦେଇଚି ।

ସନ୍ତୋଷ ହସି ଉଠିଲା ଜୋରରେ, ସତେ ନା କଣ !

ସତ !

ବାଃ, ସୁନା ପିଲା ଆମର କାହ୍ନୁ । ସିଏ ଭଲ ଯେ ଖୁବ ଭଲ, ଦେଖାଇ ଦେଲେ ପୁଣି ଭଲ ହୋଇଯାଏ । ବାଟକୁ ଫେରି ଆସେ । କିନ୍ତୁ ଯେ ଖରାପ ସେ ସବୁ ବେଳେ ଖରାପ । ତାହେଲେ, ଓଃ, ଡେରି ହେଉଛି ବେ ! ସୁମି ତ ନାହିଁ କୁଆଡ଼େ ଯାଇଚି କାର୍ ନେଇ । ଆଚ୍ଛା ଏ ହଇଆ, ହଇଆ, ଜଳଖିଆ ଆଣ ତ ବାବୁଙ୍କ ପାଇଁ ।

ଜଳଖିଆ ଆସିଲା । ମାଂସ ଏକ ପ୍ଲେଟ ଆଉ ପରଟା ଖଣ୍ଡ । ଦୁଇ ତିନିଥରରେ ସେତକ ଶେଷ କରି ଦେଲା କାହ୍ନୁ । ଓଃ, କି ଆରାମପ୍ରଦ !

ସନ୍ତୋଷ ଖଣ୍ଡେ ସିଗାରେଟ୍ ଦେଲା ।

ଏଇ ଯେ ସୁମିତ୍ରା ।

ନମସ୍କାର କାହ୍ନୁବାବୁ ।

ନମସ୍କାର ।

ସୁମି, କାହ୍ନୁବାବୁ ଆସିଚନ୍ତି ପୁଣି । ପୁଣି ଗୃହକର୍ମରେ ଯୋଗ ଦେଲେ ।

ସତରେ ?

ହଁ, ସତରେ ।

କାହ୍ନୁ କହିଲା, ମୁଁ ଆସିଛି ସୁମି !

ମୁଁ ଡ୍ରେସ୍ ହୋଇ ଆସେ, ଆଜି ନିଶ୍ଚୟ ସିନେମା ଦେଖିଯିବା, ଭଲ ଫିଲ୍ମ ଅଛି ।

କାହ୍ନୁ ସିଗାରେଟ ଖାଇବାରେ ଲାଗିଲା । ସିଗାରେଟଟା ସରୁନାହିଁ ମୋଟେ । ଜୀବନଟା କି ସୁନ୍ଦର !

ସନ୍ତୋଷ କହିଲା ରହିଯାଅ ଏଠି କେତେଦିନ ଏ କାଗଜ ଉପରେ ଜଏଣ୍ଟ୍ ମାନେଜିଂ ପାର୍ଟନର କରି ଦେବି ମୁଁ । ରହିଲେ ହେଲା । ଟଙ୍କା—ଟଙ୍କା ତ ବଜାରରେ ପଡ଼ିଛି । ଶିକ୍ଷିତ ବୁଦ୍ଧିମାନ ଯିଏ ସେ ଗୋଟାଇ ନେଇ ପାରିବ ଅକ୍ଳେଶରେ । ଆଉ ଏଇ ଅଶିକ୍ଷିତ ନିର୍ବୁଦ୍ଧିଆ ପଞ୍ଝାକ । ଖାଲି ଚିତ୍କାର କରିବେ—ଆମେ ମରିଗଲୁ, ଆମେ ସର୍ବହରା, ନିଃସ୍ୱ, ଅତ୍ୟାଚାରିତ, ନିଷ୍ପୀଡ଼ିତ ! ଆମକୁ ଭାତ ଦିଅ, ଆମକୁ ଲୁଗା ଦିଅ । କିରେ ବାବା, ତମକୁ ଲୁଗା କିଏ ଦେବ ? ଭାତ କିଏ ଦେବ ? ଏଇ ନିର୍ବୁଦ୍ଧିଆ ପଞ୍ଝାକ ପ୍ରଥମେ ମୃତ୍ୟୁର ଶିକାର ହେବେ । ଆଉ ସେମାନଙ୍କର ରକ୍ତ ମାଂସରେ ବଢ଼ିବ ଆମର ଟଙ୍କା । ମନ୍ଦ କ'ଣ ?

ସୁମିତ୍ରା ଶାଢ଼ୀ ବଦଳାଇ ଆସିଲା । ନୀଳ ରଙ୍ଗର ଜର୍ଜେଟ ଶାଢ଼ୀ, ବେଶ ମାନୁଛି ଏକା । ଆଜି ସୁମିତ୍ରା ଅପୂର୍ବ ରୂପେ ସୁନ୍ଦରୀ ହୋଇ ଉଠିଛି ଯେପରି । ମୁଖରେ ଯୌବନର ରକ୍ତିମ ଆଭା, ଆଖିରେ ଚପଳ ଦୃଷ୍ଟି ଚାହାଣୀ, ଓଷ୍ଠରେ ମୃଦୁହାସ । କି ସୁନ୍ଦର ସୁମିତ୍ରା ସତେ ! ଅନେକ, ଅନେକ ଦିନ ପରେ ଆଜି ସୁମିତ୍ରାକୁ ନୂଆ ରୂପରେ ଦେଖୁଛି ଯେପରି ! ସୁମିତ୍ରା ଆସି ବସିପଡ଼ିଲା ଗୋଟାଏ କାଉଚ୍ ଉପରେ । କୁନ୍ତଳ ଗଭାରୁ ଭାସି ଆସୁଛି ଇଭିନିଂ-ଇନ୍-ପ୍ୟାରିସର ମନୋହର ଗନ୍ଧ ।

ସୁମିତ୍ରା କହିଲା, ସମସ୍ତେ ହୋଇଗଲାଣି, ଶୋ ଆରମ୍ଭ ହେବ ଛଟା ପନ୍ଦରରେ···

କେତେଟା ହେଲାଣି ବର୍ତ୍ତମାନ ?

ଛଟା ବାଜିବାକୁ ମିନିଟିଏ ଅଛି ।

ସନ୍ତୋଷ କହିଲା, ତମେ ସବୁ ଯାଆନ୍ତରେ, ମତେ ଆଜି କାହିଁକି ଭଲ ଲାଗୁ ନାହିଁ ।

ତମର ତ ସବୁ ବନେ ସେଇ କଥା ।

ନାଇଁ ସୁମି ପ୍ରକୃତରେ ମତେ ଭଲ ଲାଗୁନାହିଁ । ଆଚ୍ଛା କାହ୍ନୁ ରହିବେ କେଉଁଠି ? ଏଠିକି ଚାଲି ଆସୁନ୍ତୁ ? ଏଠି ରହିବାରେ ସୁବିଧା ହେବ ।

ଚେଷ୍ଟା କରିବ ।

ସୁମିତ୍ରା କାହ୍ନୁର ହାତ ଧରି କହିଲା, ଗପ କରିବାକୁ ବର୍ତ୍ତମାନ ସମୟ ନାହିଁ, ଆସ—

ଗଉରୀ ପଢୁଛି ।

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ

ନବାନି ଗୃହ୍ଣାତି ନରୋଽ ପରାଣି

ତଥା ଶରୀରାଣି ବିହାୟ ଜୀର୍ଣ୍ଣା—

ନ୍ୟନ୍ୟାନି ସଂଯାତି ନବାନି ଦେହୀ ।

ବସା ପୁରୁଣା ହୋଇଗଲେ ପକ୍ଷୀ ଯେପରି ପୁରୁଣା ବସା ଛାଡ଼ି ଦେଇ ନୂଆ ବସା ତିଆରି କରେ, ଲୁଗା ପୁରୁଣା ହୋଇଗଲେ ଲୋକେ ଯେପରି ପୁରୁଣା ଲୁଗା ଛାଡ଼ି ନୂଆ ଲୁଗା ପିନ୍ଧନ୍ତି, ସେପରି ମଣିଷ ପୁରୁଣା ଦେହକୁ ଛାଡ଼ି ନୂଆ ଦେହ ଗ୍ରହଣ କରେ—ବାସାଂସି ଜୀର୍ଣ୍ଣାନି ଯଥା ବିହାୟ—ନବାନି—

ଗଉରୀ !

କିଏ ?

ଆତ୍ମହତ୍ୟା କରିବାକୁ ଯାଉଛୁ ?

କେମିତି ଜାଣିଲ ?

ଏଇ ଯେ ବାସାଂସି ଜୀର୍ଣ୍ଣାନି—ଘର ହାଇରାଣ ହଉଚୁ ନୁହେଁ ?

ଗଉରୀ କାନ୍ଦି ଉଠିଲା । କହିଲା, ପୁଣି କାହିଁକି ଆସିଲ କାହ୍ନୁ ଭାଇ ? ଦୁଇ ଦିନ ହେଲା ଆସି ନଥିଲ ବେଶ୍ ଥିଲି । କିଏ ଏଠିକି ଆସିବାକୁ କହିଲା ? ତମେ ଯାଅ, ଯାଅ କାହ୍ନୁ ଭାଇ ! ତମକୁ ମୋ ରାଣ ।

ଗଉରୀ ! ହରି ଠାକୁର ଅଛନ୍ତି, ତାଙ୍କୁ ଭୁଲୁଛୁ ? ମରିବାକୁ ବସିଛୁ କାହିଁକି ? ଆଉ ହାଇରାଣ ହେବାକୁ ପଡ଼ିବ ନାହିଁ । ମୁଁ ଯେତେଦିନ

ଯାଏ ଅନ୍ତତଃ ବଞ୍ଚିଛି, ସେତେଦିନ ଯାଏ ତୋର କଣ୍ଟି ଅସୁବିଧା ହେବ ନାହିଁ । ତୋ ଦେହରେ କେହି ଟିପ ବି ଦେଇ ପାରିବେନି ।

କାହ୍ନୁ ଭାଇ ଚାଲିଯାଅ, ଚାଲିଯାଅ ତମେ ! ମତେ ଶାନ୍ତିରେ ମରିବାକୁ ଦିଅ ।

ଦୁଃଖ କାହିଁକି ? ଅଭାବ, ଅନାଟନ, ଦୁଃଖ ଯନ୍ତ୍ରଣା ଭିତରେ ଆମର ଜନ୍ମ । କାନ୍ଦିବାକୁ ଆମର ଜନ୍ମ ହୋଇଛି, ହସିବାକୁ ନୁହେଁ । ଅଭାବରେ ଯାହାର ଜନ୍ମ, ଲୁହ ଯାହାର ଚିରସାଥୀ, ଅନାଟନ ଯାହାର ବନ୍ଧୁ, ନିରାଶା ଯାହାର ଭାଇ, ତାର ଆଉ ଦୁଃଖ କଣ ? ଦୁଃଖ ଯଦି କେବେ ହଠାତ୍ ଆସେ, ଯନ୍ତ୍ରଣା ଯଦି ଥରେ ହୁଏ, ନିରାଶା ଯଦି ଜୀବନରେ ଥରେ ମାତ୍ର ଆସେ, ତାହା ବାଧେ ପ୍ରାଣକୁ ପୀଡ଼ନ କରେ । କିନ୍ତୁ ଆମକୁ କଣ ବାଧିବ ଏସବୁ ? ଜୀବନ ପରା ଆମର ଅଶ୍ରୁରେ ଗଢ଼ା ! ଏଇଥିପାଇଁ ତୁ ଆତ୍ମହତ୍ୟା କରିବାକୁ ବସିଚୁ ? ଏଇଥିପାଇଁ ମଣିଷକୁ ମାରିବାକୁ ବସିଚୁ ? ଯୁଦ୍ଧ କରି ନପାରି, ଶତ୍ରୁ ସହିତ ଲଢ଼ି ନପାରି, ନିଜକୁ ଯିଏ ମାରିଦିଏ ତାଠାରୁ ଭଳି ଦୁର୍ବଳ, ତାଠାରୁ ଅଧିକ ଖରୁ ଆଉ କେହି ଅଛନ୍ତି ବୋଲି ମୋର ମନେ ହୁଏନା । ମୁଁ ଥାଉ ଥାଉ ତୋର ଆଉ ଭୟ କାହାକୁ ? ସନ୍ତୋଷର ଚାକିରୀକୁ ମୁଁ ଫିଙ୍ଗି ଦେଇଚି କେବଳ ତୋରି ପାଇଁ । ଆଉ ଗୋଟାଏ ଚାକିରୀ କରୁଚି, ଆମର ଆଉ ଅଭାବ କଣ ?

କାହ୍ନୁ ରାସ୍ତା ଉପରକୁ ଚାଲିଆସିଲା ।

କି କାହ୍ନୁ ବାବୁ !

କାହ୍ନୁ ପଛକୁ ଚାହିଁଲା, ପଛରେ ସନ୍ତୋଷ ।

ପୁଣି ମୋହ ଲାଗି ଗଲାଣି କି ?

ସନ୍ତୋଷ ! କଳ୍ପନା କରୁଚି ।

ଓଃ ବୁଝିଲି, ଏଇଥିପାଇଁ ତାହେଲେ ତୁ ଯାଇନୁ ଆମ ଘରକୁ ।

ମୋ ଇଚ୍ଛା ।

ଖାଲି ତ ଇଚ୍ଛା ! ସେଦିନ ଇଚ୍ଛା ତ ବାହାରୁ ନଥିଲା ?

ଐଶ୍ବର୍ଯ୍ୟ ପୃଥିବୀର ସବୁ ଜିନିଷ କିଣିପାରେ ସନ୍ତୋଷ, କିନ୍ତୁ ଗରିବର ସମ୍ମାନକୁ କିଣି ପାରେନା ।

ହାଃ-ହାଃ-ହାଃ ଗରିବ ଆଉ ସମ୍ମାନ, ସତେ ଯେପରି ଗରିବର ଗୋଟାଏ ସମ୍ମାନ ଅଛି !

ଗରିବକୁ ଏତେ ଶ୍ରେଷ୍ଠ ଭାବନା ସନ୍ତୋଷ—

ଗରିବକୁ ଭୁଲି ପୁଣି କାହ୍ନୁ ରହିପାରିବ ? ସୃଷ୍ଟି ପ୍ରଳୟ ହୋଇଗଲେ ବି ନୁହେଁ । ଆଚ୍ଛା କଣ ଠିକ କଲୁ ?

କହୁଚି ।

ତା ହେଲେ ମୋ ପାଖରେ ଆଉ ଚାକିରି କରିବୁନି ?

ନା, ଏପରି ଅଭଦ୍ର ଅଶ୍ଳୀଳ ପାଖରେ ମୁଁ ଚାକିରି କରି ପାରେନା ।

ଖାଲି ତ ଭଦ୍ର ! ଖାଲି ମୁହଁ ହୋଇଗଲାଣି, ବଦମାସ, ଚୋର !

ଗୋଟାଏ ଶକ୍ତ ଚାପୁଡ଼ା ଦେଲା ସନ୍ତୋଷ । ମୁଣ୍ଡ ବୁଲାଇ ଦେଲା କାହ୍ନୁର । ଚତୁର୍ଦ୍ଦିଗ ଅନ୍ଧାର ଦେଖାଗଲା । ଦେହର ସର୍ବାଙ୍ଗ ଜଳି ଉଠିଲା ଯେପରି ରାଗରେ । ସନ୍ତୋଷ ମଟରରେ ବସି ଷ୍ଟାର୍ଟ ଦେଉଚି । କାହ୍ନୁ କହିଲା, ସନ୍ତୋଷ ! ନିଶ୍ଚୟ ଏହାର ପ୍ରତିଶୋଧ ନେବି ।

ସନ୍ତୋଷ କାହ୍ନୁ ପାଖ ଦେଇ ତୀବ୍ର ବେଗରେ କାର୍ ଛୁଟାଇ ନେଲା । ଗୋଟାଏ ମୁହୂର୍ତ୍ତରେ ଅଦୃଶ୍ୟ ହୋଇଗଲା କାର । ସନ୍ତୋଷକୁ ଯଦି ହତ୍ୟା କରିପାଇ ପାରନ୍ତା ! କାହ୍ନୁ ଆଖିରେ ଜମି ଆସୁଥିବା ଲୁହ ବିନ୍ଦୁକୁ କାମିଜରେ ପୋଛି ଦେଲା । ଅଫିସ ଟାଇମ୍

ହୋଇଗଲାଣି । ନୂଆ ଚାକିରି ।  କେତେ  କଷ୍ଟରେ  ମିଳିଛି,  ଶୀଘ୍ର ଯିବାକୁ ହେବ ।

ଭିକାରୁଣୀଟିଏ ହାତ ପତାଇ ମାଗିଲା, ଆଲ୍ଲା ତେରା ଭଲ୍ କରେ ଗା ବେଟା ।

କାହ୍ନୁ ଦୁଇ ପକେଟ  ଅଣ୍ଡାଳି  ଦେଖିଲା  ଗୋଟାଏ  ସୁଦ୍ଧା ପଇସା ନାହିଁ । କହିଲା, ନାହିଁ । ଭିକାରୁଣୀଟି ପୁଣି  ହାତ  ବଢ଼ାଇ କହିଲା, ଆଲ୍ଲା ତେରା ଭଲ୍ କରେ ଗା ବେଟା—

ଭିକାରୁଣୀ ଯୌବନ ଅତିକ୍ରମ  କରି  ଯାଇଛି ।  ଦେହରେ ଛିନ୍ନ ଲୁଗା । ଦେହର ଅଧିକାଂଶ ଭାଗ ଉନ୍ମୁକ୍ତ । ଜୀର୍ଣ୍ଣ ଶୀର୍ଣ୍ଣ ଶାଢ଼ୀ ଖଣ୍ଡିକ ସମ୍ପୂର୍ଣ୍ଣ ରୂପେ ଲୁଚାଇ ପାରୁନି ଦେହକୁ ।  ଆଖି  କୋଣରେ ଲାଗି ରହିଛି କେତେ ବିନ୍ଦୁ ଅଶ୍ରୁ । କି  ଉତ୍କଟ କି  ଭୀଷଣ  ଏଇ ଦାରିଦ୍ର୍ୟ ? କେତେ ଜଣ ବାବୁ  ଭିକାରୁଣୀ ଦେହର  ମୁକ୍ତ  ଅଂଶ ଉପରେ ହିଂସ୍ର ଲୋଲୁପ ଆଖି ପକାଇ ଚାଲି ଗଲେ ।  କି  କୁତ୍ସିତ ଏଇ ଦୃଷ୍ଟି ! ଏ ଭିକାରୁଣୀ  ଦେହରେ  କାହିଁ  ସେଇ  ଯୌବନ ଯାହାକୁ ବାହାରର ଅସଂଖ୍ୟ ଶିକ୍ଷିତ ଲୋଲୁପ ଆଖି ଚାହେଁ ?

ବାହାରର ଜନତା କହେ, କାହ୍ନୁ ପାପୀ, କାହ୍ନୁ ଦୁଷ୍ଟଚରିତ୍ର, ମିଥ୍ୟାବାଦୀ, ମଦ୍ୟପ ।  ଜନତାର  ଏ  କଳଙ୍କ  ନିକଟରେ  ଆତ୍ମ ନିବେଦନ କରିବ, ନା ନିଜକୁ ଏ କଳଙ୍କରୁ ଉଦ୍ଧାର କରିବ ?

ସନ୍ତୋଷ କି ଅଭଦ୍ର ! ସନ୍ତୋଷ ବନ୍ଧୁ ହୋଇ ପାରେ, ଆଶ୍ରୟ ଦାତା ହୋଇ ପାରେ, ଦୟାଶୀଳ ହୋଇପାରେ । କିନ୍ତୁ ଐଶ୍ବର୍ଯ୍ୟ ତାର ମନୁଷ୍ୟତ୍ୱକୁ ମାରି ଦେଇଛି, ପଶୁତ୍ୱ ଜାଗି ଉଠିଛି  ତା  ଦେହର ରନ୍ଧ୍ରେ ରନ୍ଧ୍ରେ । ସନ୍ତୋଷ ବିରୁଦ୍ଧରେ  କି  ଯୁଦ୍ଧ  କରିବ  ସେ  ? ସନ୍ତୋଷର ଧନ ଅଛି, କ୍ଷମତା ଅଛି, ମାନ ସମ୍ମାନ ଅଛି । କିନ୍ତୁ ତାର କଣ ଅଛି ? ନା ପ୍ରତିପତ୍ତି, ନା ଐଶ୍ବର୍ଯ୍ୟ, ନା କ୍ଷମତା ! ଏତେବେଳେ

ଯାଏ ବି ମୁଣ୍ଡଟା ବୁଲିଉଠି । ଓଃ, ପ୍ରତିଶୋଧ ନେବାକୁ ହେବ । ହାଃ-ହାଃ-ହାଃ କିପରି ନେବ ସେ ପ୍ରତିଶୋଧ ? କାଙ୍ଗାଳ କାହିଁ ପ୍ରତିଶୋଧ ନେଇ ପାରିବ ? ଅସମ୍ଭବ, ଅସମ୍ଭବ ।

କେଉଁଦିନ ଏ ଦୁଃଖ ଶେଷ ହେବ ? କେଉଁଦିନ ଏ ଯନ୍ତ୍ରଣା ଶେଷ ହେବ ? କେଉଁଦିନ ଏ ଦାରିଦ୍ର୍ୟ ବିଦାୟ ନେବ ? ତା ଅପେକ୍ଷା ମୃତ୍ୟୁ ବରଂ ଶ୍ରେୟସ୍କର ! ଆତ୍ମହତ୍ୟା ଯଦି କରି ହୁଅନ୍ତା ! ନା ନା ଦେହହତ୍ୟା ଯଦି କରି ହୁଅନ୍ତା ! ଛି, ଟିଉସନ୍‌କୁ ପଢ଼ା ଉପଦେଶ ଦେଉଥିଲି ! ଯେ ଆତ୍ମହତ୍ୟା କରେ ସେ ଦୁର୍ବଳ ଭୀରୁ କାପୁରୁଷ । ପରାଜୟକୁ ସହ୍ୟ ନକରି ପାରି ଦେହକୁ ଦେବ ମୃତ୍ୟୁଦାନ ?

ଉପରେ ଉଦାର ଶାନ୍ତ ଗମ୍ଭୀର ଆକାଶ, ଦୂର ଦିଗ୍‌ବଳୟର ସୁନ୍ଦର ମନୋରମ ଅପୂର୍ବ ଶ୍ରୀ, ମାଟି ଓ ଫୁଲର ଗନ୍ଧ ଜୀବନକୁ ବାନ୍ଧି ଧରୁଛି ଯେପରି । ରେଲ ଷ୍ଟେସନ । ଷ୍ଟେସନ ଆରପାଖେ ଅଫିସ । ଅଫିସ ଦେଖାଯାଉଛି । ଗୋଟାଏ ଇଂଜିନ୍ ଚିତ୍କାର କରି ଧାଇଁଛି । କେତେଟା ରିକ୍‌ସାବାଲା ମଧ୍ୟାହ୍ନ ଟ୍ରେନର ଅପେକ୍ଷାରେ ଅଛନ୍ତି । ରିକ୍‌ସାରେ ବସି ଗୋଟାଏ ଲୋକ ଗଲା । ପୋଲିସ । କାନ୍ଧରେ ପିତଳ ବ୍ୟାଜ୍, ଏସ୍. ପି., ସୁପରିନ୍‌ଟେଣ୍ଡେଣ୍ଟ ଅଫ୍ ପୋଲିସ । ଆଉ କଣ ହୋଇ ପାରେ ? ସୋସଲିଷ୍ଟ ପାର୍ଟି, ପ୍ରେଲିଂ ମିଷ୍ଟେକ୍, ସୁନନ୍ଦା ପଟ୍ଟନାୟକ, ସନ୍ତୋଷ ପଟ୍ଟନାୟକ, ସୁମିତ୍ରା ପଟ୍ଟନାୟକ, ସାଉଥ ପୋଲ୍······

ସେଦିନ ଅପାର ବାହାଘର ହେଉଥିଲା । ସେତେବେଳେ ତାକୁ ମୋଟେ ସାତ ବର୍ଷ । ଗୋଟାଏ ବଗଡ଼ି ଛୁଆକୁ ପ୍ଲେଟ ଡବା ଭିତରେ ଭର୍ତ୍ତିକରି ରଖିଥିଲି ସେ, ବାହାଘରର ଗହଳ ମଧ୍ୟରେ କାଳେ ହଜି ଯିବ ଛୁଆଟି । ତାପର ଦିନ ସକାଳେ ଡବା ଖୋଲି ଦେଖିଲି ବେଳକୁ ବଗଡ଼ି ମରିଯାଇଛି । ବାହାଘରର କୋଳାହଳ ମଧ୍ୟରେ

ହଜିଲା ନାହିଁ ସେ, ହଜିଲା ଜୀବନ ଓ ମରଣର କୋଳାହଳ ମଧ୍ୟରେ । କ କଣ୍ଟ ନପାଇ ମରିଥିବ ସେ ! ତାର ଅଭିଶାପ, ତାର ଦୁଃଖ ନିଶ୍ୱାସ ହୁଏତ ତା ଉପରେ ପଡୁଛି । ସେ କଣ ଇଚ୍ଛା କରି ମାରି- ଥିଲା ତାକୁ ? ଅଜାଣତରେ; ସଂପୂର୍ଣ୍ଣ ଅଜାଣତରେ । ହେ ଭଗବାନ କ୍ଷମା ଦିଅ ! ଅଜ୍ଞାନ ଅବସ୍ଥାରେ ମାରିଚି, ମତେ କ୍ଷମା ଦିଅ । କ୍ଷମା ? କ୍ଷମା କିଏ ଦେବ ? ଭଗବାନଙ୍କୁ ଯିଏ ଉପହାସ କରେ ତାକୁ ଭଗ- ବାନ କ୍ଷମା ଦେବେ, ନୁହେଁ ? ଚମତ୍କାର । ଭଗବାନ ପାପୀକୁ କ୍ଷମା ଦିଅନ୍ତି ନାହିଁ, ନାସ୍ତିକକୁ ଦିଅନ୍ତି ନାହିଁ, ଦିଅନ୍ତି ଭକ୍ତଙ୍କୁ, ନିର୍ଦ୍ଦୋଷକୁ । ଆଜି ଯେତେ ପାପ କଲେ ମଧ୍ୟ ଧର୍ମୀକୁ । ରକ୍ଷ ତମର ଭଗବାନ ! ଯୋଉଠି ତ ଭଗବାନ !

ଆଗରେ ଅଫିସ, ଅଫିସ ସମୟ ହୋଇଗଲାଣି । ତର ତର ହୋଇ ଅଫିସ ଭିତରକୁ ପଶିଗଲା କାହ୍ନୁ ।

କାହ୍ନୁ ଆସି ଦେଖିଲା ଗଉଡ଼ଙ୍କ ଘରେ ନିଆଁ ଲାଗି ଜଳୁଛି ।
ରାସ୍ତା ଉପରେ ଗଉଡ଼ଙ୍କ ହଣ୍ଡକୁ କାଖେଇ ଠିଆ ହୋଇ କାନ୍ଦୁଛି ।
କେତେ ଜଣ ନିଆଁ ଉପରକୁ ପାଣି ପକାଉଛନ୍ତି । ଘର ସମ୍ପୂର୍ଣ୍ଣ
ରୂପେ ଜଳ ସରଲାଣି । କାହ୍ନୁ ଜନତା ଠେଲି ଗଉଡ଼ଙ୍କ ପାଖକୁ ଗଲା ।

କହିଲା, ଗଉଡ଼ଙ୍କ, ଚାଲନା ମୋ ଘରକୁ । ନିଆଁ ଲାଗି ଘର ତ
ଶେଷ ହୋଇ ଗଲାଣି । ଆଉ ଭାବିଲେ କଣ ହେବ ? ଆସ, ଆସ
ମୋ ଘରକୁ ।

କାହ୍ନୁ ଆଗେ ଆଗେ ଚାଲିଲା । କାହ୍ନୁର ହାତ ଧରିଥାଏ ହରି ।
ହରି ପଛେ ପଛେ ଗଉଡ଼ଙ୍କ ।

କେମିତି ଲାଗିଲା ନିଆଁ ?

ମୁଁ ତ ଖାଇସାରି ଶୋଇଥିଲି—

କଣ ଚୁଲ୍ଲୀରୁ ଲାଗିଗଲା ?

ଆଜି ଚୁଲ୍ଲୀ ଜମା ଲାଗିନି ।

ତେବେ ଲାଗିଲା କେମିତି ? କିଏ ବାହାର କରିନୁ ?

କଣ ଥିଲା କି ବାହାର କରନ୍ତି ?

ହଠାତ୍ ଆଗରେ ଆସି ରହିଗଲା ସନ୍ତୋଷର ମଟର । ସନ୍ତୋଷ
ବାହାରକୁ ମୁହଁ ବାହାର କରି କହିଲା, ବେଶ୍ ମାନୁଛି ଏକା ! ଘର ତ
ପୋଡ଼ିଗଲା, ଯାଉଛ କୁଆଡ଼େ ?

କାହ୍ନୁ ପାଟି କଲା, ତୁଇ ଲଗାଇଚୁ ନିଆଁ ।

ମୁଁ ଲଗାଇଥିଲେ ବି ତୁ କଣ କରିବୁ ? ହାଃ ହାଃ ହାଃ —
ସନ୍ତୋଷ ଡ୍ରାଇଭ କରି ଚାଲିଗଲା । ପଛରୁ ପେଟ୍ରୋଲ ପୋଡ଼ିର
ଗନ୍ଧ ଆସୁଥାଏ ।

ଯାଉ, ପୋଡ଼ିଗଲା ତ ।

ତିନିହେଁ ଆସି ପହଞ୍ଚିଲେ କାହ୍ନୁର ବସାରେ ।

କି ନିଷ୍ଠୁର ଏଇ ସନ୍ତୋଷ ! ଗୋଟିଏ ଅସହାୟାର ସର୍ବସ୍ୱ ଲୁଟ କରିବାକୁ ତା ହାତ ଗଲା କିପରି ? ଏତେ ଐଶ୍ୱର୍ଯ୍ୟ କଣ ସନ୍ତୋଷକୁ ସନ୍ତୋଷ କରି ପାରିନି ? ଗୋଟିଏ ଗରିବ ଘରେ ନିଆଁ ଲଗାଇ କି ଆନନ୍ଦ ପାଇଲା ସେ ?

ଲୁକକଣି ଆଉ ନାହିଁ । ମାଲିକ କହିଲେ, ଚରିତ୍ରହୀନ ଲୋକଙ୍କୁ ଲୁକଣାରେ ରଖାଯାଏ ନାହିଁ । ଆଉ ଚରିତ୍ରବାନ କିଏ ? ସନ୍ତୋଷ ? ଭଗବାନ ଏ ଦୁଃଖ ଉପରେ ଦୁଃଖ କାହିଁକି ଦେଉଛ ? ଦୁଃଖ ସହିବାର ସୀମା ଅଛି । କିନ୍ତୁ ସେ ସୀମା ଅତିକ୍ରମ କଲେ ?

ଘର ପରିଷ୍କାର କଲା ଗଉରି । କାହ୍ନୁ କହିଲା, ତମେ ମା ପୁଅ ଦୁହେଁ ଏଇ ଘରେ ଶୁଅ, ମୁଁ ବାରଣ୍ଡାରେ ଶୋଇବି ।

ସନ୍ତୋଷ, ସନ୍ତୋଷର ଉଷ୍ମ ତପଳ ରକ୍ତରେ ସ୍ନାନ କଲେ କେତେ ଆନନ୍ଦ ମିଳନ୍ତା ! କି ନିର୍ମମ ! କି କଠୋର ! କି ହୃଦୟ-ହୀନ ଏଇ ସନ୍ତୋଷ !

* * * *

ଆକାଶରେ ବିଳମ୍ବିତ ଚନ୍ଦ୍ରୋଦୟ ।

ଚନ୍ଦ୍ର ଦେଖା ଯାଉ ନାହିଁ । କିନ୍ତୁ ଚନ୍ଦ୍ରର ଆଲୋକ ଦେଖା ଯାଉଛି । ସେହିପରି ହୁଏତ କାହ୍ନୁ ଲୁଚି ଯାଇପାରେ କିନ୍ତୁ କାହ୍ନୁର ଆଲୋକ ଚିର ଦିନ ଲାଗି ଦେଖାଯିବ । ଆଜି ହୁଏତ ଶେଷ ଦିନ । ଆଉ କେବେ ଚନ୍ଦ୍ରୋଦୟ ଦେଖି ପାରିବ କି ନାହିଁ କିଏ ଜାଣେ ? କେଉଁ ଦୂରରୁ ବଂଶୀରେ ଭାସି ଆସୁଛି ଗୋଟିଏ ସଙ୍ଗୀତର କରୁଣ ଆଳାପ । କାମିନୀ ଫୁଲର ଗନ୍ଧ ମୃଦୁ ପବନରେ ଭାସି ଆସୁଛି । କେତୋଟି ପ୍ରାସାଦର ସିଲ୍‌ହୋଏଟ୍ ଦେଖାଯାଉଛି । ହେ ପୃଥିବୀ !

ହେ ମାତା ! ହେ ଜନ୍ମଦାତ୍ରୀ ! ବିଦାୟ, ବିଦାୟ ! ଜାଣେନା ଆଉ
କେବେ ତୋ ସଙ୍ଗେ ଦେଖା ହେବ କି ନାହିଁ ! ଜାଣେନା ଆଉ
କେବେ ତୋ କୋଳରେ ହସିବି କି ନାହିଁ, ତଥାପି ହେ ମାତା !
ତୋର ସ୍ନେହ ମୁଁ ଭୁଲିଯାଇବି ନାହିଁ । ଜୀବନ ପରେ ମୃତ୍ୟୁ, ଆଉ
ମୃତ୍ୟୁ ପରେ ଜୀବନ । ତୋ କୋଳରେ ଜନ୍ମ ନେଲି ଯେଉଁଦିନ
ସେ ଦିନ ମୁଁ କାନ୍ଦିଥିଲି, ଅନ୍ୟମାନେ ହସିଥିଲେ କିନ୍ତୁ ଆଜି ପୁଣି
ମୃତ୍ୟୁକୁ ଫେରିଯିବି ହସି ହସି । ଜାଣେନା ଆଉ କିଏ କାନ୍ଦିବ କି ନାହିଁ ।
ହେ ମାତା, ହେ ସ୍ନେହଶୀଳା, ହେ ଜନନୀ, ରଜନୀର ଏ ନିର୍ଜନ
ଅଙ୍କରେ ମୁଁ ବିଦାୟ ମାଗୁଛି, ମୋତେ ଆଶୀର୍ବାଦ କର । ମତେ
ସାହସ ଦିଅ । ଯେପରି ମୁଁ ଯୁଦ୍ଧ ପରି ପଳାୟନ ନକରେ, ସାହସର
ସହିତ ମୃତ୍ୟୁକୁ ବରଣ କରେ । ହେ ପୃଥିବୀ ! ବିଦାୟ, ବିଦାୟ ।

ସନ୍ତୋଷ ବେଶ ଆରାମରେ ନିଦ୍ରା ଯାଇଥିଲା । ଏପରି ଅବ-
ସ୍ଥାରେ ମାଣିକା କଣ ଉଚିତ ? ଆଖିରୁ ନିଦ୍ରା ପଳାଇଛି ଯେପରି ।
ମାକ୍‌ବେଥ୍‌ଙ୍କ ପରି ସେ ହୁଏତ ହତ୍ୟା କରିଛି ନିଦ୍ରାକୁ !

ଗଉରୀ ହରିକୁ ନେଇ ଶୋଇଛି । ସେ କଣ ଜାଣିବ ଏକଥା ?
ଦୁଃଖିନୀ ଅସହାୟା ବିଚାରୀ ! କେତେ ଦୁଃଖ ନ ପାଇଲା । କେତେ
କଷ୍ଟ ନ ସହିଛି । ଠିକ୍ ହୋଇଚି । ଏହା ଛଡ଼ା ଆଉ କି ପ୍ରତିଶୋଧ
ନିଆଯାଇ ପାରିଥାନ୍ତା ? ସର୍ବାଙ୍ଗ ଏବେ ବି ଥରି ଉଠୁଛି । ଦେହର
ପ୍ରତି ରକ୍ତ ଯେପରି ଅଥୟ ହୋଇ ପଡ଼ିଲାଣି ମୃତ୍ୟୁକୁ ବରି ନେବାକୁ ।
ଗଉରୀକୁ ଉଠାଇ ଲାଭ କଣ ? ନା ସେ ଶୋଇଥାଉ ।

ଚତୁର୍ଦ୍ଦିଗ ନିର୍ଜନ । ରଜନୀର ଏ ନିଦ୍ରାଳସୋର ମୁହୂର୍ତ୍ତ କି
ଭୀଷଣ, କି ଉତ୍କଟ ! ଅସହ୍ୟ ଏ ନୀରବତା !

ବାପାଙ୍କର କେତେ ଆଶା ନିମିଷକରେ ପଣ୍ଡ ହୋଇଯିବ ।
ଭଉଣୀମାନେ ବାହା ହେବେ, କରିଜ ଟଙ୍କା ଶୁଝା ଯିବ, ଘରର

ଅବସ୍ଥା ବଦଳି ଯିବ । କେତେ ଆଶା, କେଉଁଟା ସଫଳ ହେଲା ? ଅଦୃଷ୍ଟ ମନୁଷ୍ୟଙ୍କୁ ଦାନ କରିଚି ଅପୂର୍ଣ୍ଣତା । ଅପୂର୍ଣ୍ଣ, ଖଣ୍ଡ ଜୀବନ ମଣିଷର । କାହିଁକି ଏପରି କଲା ? ଉପରର ଆକାଶ, ଚତୁର୍ଦ୍ଦିଗର ପ୍ରକୃତିର ଅଖଣ୍ଡ ନୀରବତା, ଜୀବନକୁ ଟାଣି ଧରୁଚି ଯେପରି । କି ସୁନ୍ଦର ଏ ଜୀବନ ! ମରିବାକୁ ଇଚ୍ଛା ହେଉନାହିଁ ଜମା !

କିଏ ?

ଗଉରୀ ଉଠିଚି । ପଳାଇ ଯିବାକୁ ହେବ । କାହ୍ନୁ ପଳାଇବାକୁ ବସିଛି । ଗଉରୀ ବାହାରି ପଡ଼ିଲା ଘରୁ । କିଏ ?

ମୁଁ ।

କିଏ ?

ମୁଁ କାହ୍ନୁ, ମୁଁ ଆସିଚି ଗଉରୀ ।

ତମେ ଦୁଇ ଦିନ ହେଲା କେଉଁଠି ଥିଲ ?

ମୁଁ ଚାଲି ଯାଉଚି ବର୍ତ୍ତମାନ । କାମ ଅଛି, ପରେ---

ଟର୍ଚ୍ଚଟା ନେଇଯାଅ ।

ଆଜି ଦେଖାଇଲା ଗଉରୀ ଜୀବନର ଶେଷ ଦିନରେ । ଟର୍ଚ୍ଚ କଣ ହେବ ?

ସିଠିଟାଏ ଆସିଥିଲା, ବାପା ଦେଇଚନ୍ତି ।

ଗଉରୀ ଘର ଭିତରକୁ ଗଲା । ଚିଠି ଆଣି ଟର୍ଚ୍ଚ ପକାଇ ପଢ଼ିଲା—

ବାବୁରେ !

ଢେର ଦିନରୁ ଚିଠି ପାଉନାହିଁ । ପ୍ରତି ଡାକକୁ ଚାତକ ପରି ରହିଁ ବସିଚୁ । କିନ୍ତୁ ଚିଠି ଦେଖା ନାହିଁ । ତୁ କୁଆଡୁ ବାପା ମାଙ୍କର ମନ କଥା ବୁଝିବୁ ? ବାପା ହେଲେ ଜାଣିବୁ ବାପ । ସୁରମାକୁ ତିନି ଦିନ ହେଲା ଜର । ମରିବ କି ବଞ୍ଚିବ ଠିକ୍ ନାହିଁ । ତତେ ସବୁ-ବେଳେ ଖୋଜୁଚି । କହୁଚି, ବଡ଼ ଭାଇ କାହିଁ ? ତୁ ଆସିବୁ ଥରେ ।

ତୋର ସେ ସ୍ଥାନ ଭଉଣୀ ପରା ! ଆମେ ଆସି ବୁଢ଼ା ବୁଢ଼ୀ ହେଲୁ । ଘରର ଦାୟିତ୍ୱ ଏଥର ତୋ ଉପରେ । ତତେ ଆଶା କରି ବସିଚୁ—

ଆଜ ଆଜ ଗଉରୀ—

ଗଉରୀ ଚିଠି ପଢ଼ା ବନ୍ଦ କରି ଗୃହିଁଲା କାହ୍ନୁ ଆଡେ ।

ଆଉ ପୁଣି ତାକୁ ପଢ଼ି ନାହିଁ । ହୃଦୟରେ ଦୁର୍ବଳତା ଆସୁଚି । ପୁଣି ବଞ୍ଚି ରହିବାକୁ ଇଚ୍ଛା ହେଉଚି । ବନ୍ଦ କର । ଆଜ ଯେତେ-ବେଳେ ମୁଁ ମରଣ ଦଗରେ ଆଗେଇ ଗୃଲିଚି ସେତେବେଳେ ଏ ପଶ୍ଚାତ ଆହ୍ୱାନକୁ ବନ୍ଦ କର ଗୌରୀ, ବନ୍ଦ କର । ଗଉରୀ ଜାଣିଚ ? ଆଜ ମୁଁ ମାରି ଦେଇଚି ସନ୍ତୋଷକୁ । ଏଇ ଦୁଇଟି ହାତରେ, ଏଇ ଦୁଇଟି ସୁନ୍ଦର ନରମ ହାତରେ, ମୁଁ ମାରି ଦେଇଚି ସନ୍ତୋଷକୁ ।

'ଆଁ' ଗଉରୀ ଚିତ୍କାର କରି ଉଠିଲା, ହାତରୁ ଚିଠିଟା ଖସି ପଡ଼ି କାଚ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା ।

ବିଦାୟ, ଗଉରୀ ବିଦାୟ । ମୁଁ ଯିବି ମୃତ୍ୟୁକୁ ଆଉ ତମେ ଜୀବନକୁ । ଦୁଃଖ କରିବନି ଭଉଣୀ । ଆଲୋକ ପରେ ଅନ୍ଧାର ଆସେ, ଅନ୍ଧାର ପରେ ଆସେ ଆଲୋକ । ଜୀବନ ପରେ ମୃତ୍ୟୁ, ଆଉ ମୃତ୍ୟୁ ପରେ ଜୀବନ । ତେଣୁ ମୋ ପାଇଁ ଦୁଃଖ କରିବନି । ସମସ୍ତେ ହେବ ତମର ସହାୟ......ଛିଃ, ଗଉରୀ କାନ୍ଦୁଚୁ ? ଏ ଶୁଭ ମୁହୂର୍ତ୍ତରେ କ୍ରନ୍ଦନ ଅଶ୍ରୁ କାହିଁକି ? ବର୍ତ୍ତମାନ କାନ୍ଦିବାର ସମୟ ନୁହେଁ । ସାହସ ବାନ୍ଧିବାର ସମୟ । ଯୁଦ୍ଧ କ୍ଷେତ୍ରରେ ବୀର କାନ୍ଦେ ନାହିଁ । କାନ୍ଦେ ଭୀରୁ, ପରାଜିତ । କାନ୍ଦନା । ଆଚ୍ଛା ମୁଁ ତାହେଲେ ଗୃଲିଲି—

କାହ୍ନୁ ଗୃଲି ଯାଉଥିଲା । ଗଉରୀ ଡାକିଲା, କାହ୍ନୁ ଭାଇ !

କାହ୍ନୁ ପଛକୁ ଫେରି ପଚ୍ଚାରିଲା, କଣ ?

କୁଆଡ଼େ ଯାଉଛ ?

ମୁଁ, ମୁଁ ତ ମରି ଯାଇଛି ଗଉରୀ ଯେଉଁ ମୁହୂର୍ତ୍ତରେ ସତ୍ତୋଷକୁ ମାରିଲି ସେଇ ମୁହୂର୍ତ୍ତରୁ । ତୋ ପାଖରେ ରହି ତୋ ଜୀବନ ନଷ୍ଟ କରିବାକୁ ଚାହୁଁ ନାହିଁ । ବର୍ତ୍ତମାନ ମୁଁ ପ୍ରେତ, ପ୍ରେତ ! ପ୍ରେତ ହୋଇଛି ଆମରି ମଙ୍ଗଳ ପାଇଁ । ଦଧୀଚି କଥା ପଢ଼ିଚୁ ? ଦଧୀଚି ହାଡ଼ ଦେଇଥିଲେ ସମ୍ଭୂତାନମାନଙ୍କ ଧ୍ୱଂସରେ ଲାଗିବ ବୋଲି । ମୁଁ ଆଜି ଏ ଦେହ ଦାନ କରିଚି । ଆସ୍ତୁ ମୁଁ ଯାଉଚି ତେବେ— । ହରିକୁ ଆଶୀର୍ବାଦ । ହିଁ···ଦୁର୍ବଳତା ଆସୁଚି । ଏଠି ଆଉ ମୂହୂର୍ତ୍ତେ ରହି ପାରିବ ନାହିଁ । ବାପାଙ୍କ ପାଖକୁ ଖବର ଦେବୁ ମୁଁ ମରି ଯାଇଚି ଆକସ୍ମିକ ଭାବରେ, ଏକ ଦୁର୍ଘଟଣାରେ ! ଯାଉଚି, ଥାଅ ଭଉଣୀ—

କାହ୍ନୁ ଦ୍ରୁତ ଗତିରେ ଚାଲିଗଲା ।

ଗଉରୀ ପଛରୁ ଡାକିଲା, କାହ୍ନୁ ଭାଇ, ଭାଇ ! ଭାଇ ! ଫେରି ଆସ—ଫେରି ଆସ···

ଡାକ ଡାକ ତଣ୍ଟି ପଡ଼ିଗଲା ଯେପରି !

ବାଣପୁର—୧୯୪୯

ଏହାପରେ ପଢ଼ନ୍ତୁ

ଯତୀନ୍ଦ୍ର କୁମାର ଦାସଙ୍କର

# ମାନସୀ

ମନର ବେଦନା, ହୃଦୟର ଆଶା, ଆଖିର ଲୁହ ବୋଳା କାହାଣୀ। ଖଣ୍ଡିଏ ଚିତ୍ତାକର୍ଷକ ଉପନ୍ୟାସ। ଦ୍ୱିରଙ୍ଗ ପ୍ରଚ୍ଛଦପଟ୍ଟ, ପରିଷ୍କାର ମୁଦ୍ରଣ, ଆଣ୍ଟିକ୍ କାଗଜ, ସୁଦୃଶ୍ୟ ବନ୍ଧାଇ, ମନଲୋଭା ପତ୍ରପାଠୀ। ମୂଲ୍ୟ—ଦୁଇଟଙ୍କା।

# ଜୀବନ-ଜଳେ

ଜୀବନର ଏକ ଅଶ୍ରୁବୋଳା ଅଧ୍ୟାୟ।

ଉପନ୍ୟାସ

ଅବନ୍ଧା : ଏକଟଙ୍କା ଚାରିଅଣା

ବନ୍ଧାଇ : ଏକଟଙ୍କା ବାରଅଣା